# ପଲ୍ଲୀ କବି

( ନନ୍ଦକିଶୋର )

ନାଟ୍ୟକାର—
ଡକ୍ଟର ଆନନ୍ଦ ଚରଣ ମିଶ୍ର



ପଲ୍ଲୀ କବି
(ନନ୍ଦକିଶୋର)

ପ୍ରକାଶକ :
ଶ୍ରୀ ଲିଙ୍ଗରାଜ ପଣ୍ଡା
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବାଙ୍କାବଜାର, କଟକ-୨

ପ୍ରଥମ ମୁଦ୍ରଣ : ୧୯୭୮

ମୁଦ୍ରାକର :
ଶ୍ରୀ ପ୍ରତାପ କୁମାର ଦାସ
ବ୍ରଜେନ୍ଦ୍ର ପ୍ରେସ, କଟକ-୧

ମୂଲ୍ୟ—ଟ ୬-୦୦

**PALLI KABI**
(Nandakishore)

*Publisher* :
**Sri Lingaraj Panda**
Bankabazar, Cuttack-2

First Print : 1978

*Printed by* :
**Sri Pratap Kumar Das**
Brajendra Press
Cuttack-1

**Price**—**Rs. 6-00**

# ଭୂମିକାରେ

## ପୁରୁଷ

୧ । ମଧୁସୂଦନ
୨ । ନନ୍ଦ
୩ । ସୂର୍ଯ୍ୟମଣି
୪ । ବିମ୍ବାଧର
୫ । କାମପାଳ
୬ । ଗୋପାଳ
୭ । ଅଭିରାମ
୮ । ରାଧାନାଥ
୯ । ବାଙ୍ଠୋଇ
୧୦ । ନାଉରିଆ
୧୧ । ଗଙ୍ଗାଧର
୧୨ । ସେକ୍ରେଟେରୀ
୧୩ । ମଦନ
୧୪ । ଫକୀର
୧୫ । ସୁକର
୧୬ । ଗୋପବନ୍ଧୁ
୧୭ । ରଘୁବାନା

## ସ୍ତ୍ରୀ

୧ । ଶାନ୍ତ
୨ । ରେବା
୩ । ଚନ୍ଦ୍ରକଳା
୪ । କୋକିଳ
୫ । ସରସ୍ୱତୀ
୬ । କୁନ୍ତଳା

—*—

## —ନାଟକ କଥା—

ଏ ନାଟକ ଲେଖା ହୋଇଥିଲା ୧୯୬୨ ମସିହାରେ । 'ମୌସୁମୀ'ରେ [illegible] ବର୍ମାଙ୍କର ବେତାର ନାଟିକା 'ପଲ୍ଲୀକବି' ପ୍ରକାଶିତ ହେବାପରେ 'ପଲ୍ଲୀକବି' ନନ୍ଦକିଶୋରଙ୍କୁ ନେଇ ଗୋଟିଏ ନାଟକ ଲେଖିବାର ନିଶା ଲାଗିଲା ସେ ବେଳର ତରୁଣ ମନରେ । ଭଦ୍ରକ କଲେଜର ତତ୍କାଳୀନ ଓଡ଼ିଆ ଅଧ୍ୟାପକ ଶ୍ରୀ ନରେନ୍ଦ୍ର ମୋହନ ବେହେରା ମୋତେ ଉପଦେଶ ଦେଲେ, କୁସୁପୁର ଯାଇ କବିଙ୍କର ଘନିଷ୍ଠ ବନ୍ଧୁ (ଅଧୁନା ସ୍ୱର୍ଗତଃ) ସୂର୍ଯ୍ୟମଣି ଜେନାଙ୍କ ସହ ଘନିଷ୍ଠ ହୋଇ କବିଜୀବନର ଗୋପନ କଥା ଜାଣିବା ପାଇଁ । କବିପୁତ୍ର ଶ୍ରୀ ବସନ୍ତକୁମାର ବଳଙ୍କ ସହାୟତାରେ କୁସୁପୁର ଯାଇ କବିପରିବାରର ଆତିଥ୍ୟ ଗ୍ରହଣ କଲି ଓ ସ୍ୱର୍ଗତଃ ଜେନାଙ୍କଠାରୁ ନାନା ତଥ୍ୟ ସଂଗ୍ରହ କରି ଏ ନାଟକ ଲେଖିଲି । କିନ୍ତୁ ଦୁର୍ଭାଗ୍ୟବଶତଃ ପାଣ୍ଡୁଲିପିଟି ୧୯୬୪ ରେ ହଜିଗଲା ଏବଂ ଦୀର୍ଘଦିନର ଅନୁତାପ ପରେ ଯେତେବେଳେ ତା କଥା ମୁଁ ସମ୍ପୂର୍ଣ୍ଣ ଭୁଲିଯିବାପାଇଁ ସ୍ଥିରକଲି, ହଠାତ୍ ତା'ର ଆବିର୍ଭାବ ହେଲା ପଲ୍ଲୀକବିଙ୍କର ଜନ୍ମଶତବାର୍ଷିକୀ ଅବସରରେ । ସେତେବେଳେ ପ୍ରକାଶିତ ହୋଇଥିବା ସ୍ମରଣିକାରେ ଏହି ନାଟକଟିକୁ ପ୍ରକାଶିତ କରିବା ପାଇଁ ଡକ୍ଟର କୃଷ୍ଣଚରଣ ବେହେରା ସ୍ୱୀକୃତ ହୋଇଥିଲେ ହେଁ ପାଣ୍ଡୁଲିପିଟିର ଆବଶ୍ୟକୀୟ ସଂଶୋଧନ ଓ ପୁନର୍ଲିଖନ ପାଇଁ ସମୟ ଲାଗିବାରୁ ତାହା ମଧ୍ୟ ସମ୍ଭବ ହୋଇପାରିଲା ନାହିଁ ।

ନାଟକଟି ପଢ଼ିବା ପରେ କବିଜୀବନରେ ଆବଶ୍ୟକୀୟ 'ନାଟକୀୟତା' ସମ୍ବନ୍ଧରେ କେତେକ ହୁଏତ ସନ୍ତୁଷ୍ଟ ହୋଇ ନ ପାରନ୍ତି । ଏଣୁ ନାଟକଟି ଲେଖିବାର ଯଥାର୍ଥତା ସମ୍ବନ୍ଧରେ ମଧ୍ୟ ପ୍ରଶ୍ନ ଉଠିପାରେ; କିନ୍ତୁ ଯେଉଁ କବି ଓଡ଼ିଆ କବିତାକୁ ଏକ ନୂତନ ଦିଗ୍‌ଦର୍ଶନ ଦେଲେ ତାଙ୍କର ଚରିତ୍ରରେ, ଦୃଷ୍ଟିଭଙ୍ଗୀରେ ଏବଂ ଜୀବନବୋଧରେ ଯେ ନିଶ୍ଚିତଭାବେ ଅନେକଟା ସ୍ୱକୀୟତା ଏବଂ ବିଚିତ୍ରତା ଥିବ ଏହା ଅନସ୍ୱୀକାର୍ଯ୍ୟ । ଏ ନାଟକରେ ଯଥାସମ୍ଭବ ସେଗୁଡ଼ିକର ପରିପ୍ରକାଶ ପାଇଁ ଚେଷ୍ଟା କରାଯାଇଛି । ତା'ଛଡ଼ା ପ୍ରତ୍ୟେକ ଜୀବନ ଏକ ନାଟକ ଏବଂ ପ୍ରତ୍ୟେକ ନାଟକରେ 'ନାଟକୀୟତା' କ'ଣ ଏକାନ୍ତ ଆବଶ୍ୟକ ?

ଆଜି ଏହି ନାଟକଟିର ପ୍ରକାଶ ଦେଖିଥିଲେ କବି-ବନ୍ଧୁ ସୂର୍ଯ୍ୟମଣି ଜେନା ଖୁବ୍ ବେଶୀ ଖୁସି ହୋଇଥାନ୍ତେ । ଆଜି ସେ ନାହାନ୍ତି । ତାଙ୍କର ସେଇ [illegible] ମୁଖଟି ମୋର ମନେ ପଡ଼ୁଛି । ମୋର ବିଶ୍ୱାସ, ସ୍ୱର୍ଗରେ ଥାଇ ସେ ଖୁସି ହେବେ ।

ନାଟକଟି ଲେଖିବାରେ ସାଦର ଉତ୍ସାହ ଦେଇଥିବାରୁ ମୁଁ ମୋର ଶିକ୍ଷକ ଅଧ୍ୟାପକ ଶ୍ରୀ ନରେନ୍ଦ୍ର ମୋହନ ବେହେରା, ଡକ୍ଟର କୃଷ୍ଣଚରଣ ବେହେରା, ଶ୍ରୀ ବସନ୍ତ କୁମାର ବଳ, ବନ୍ଧୁ ଶ୍ରୀ ଜଗମୋହନ ପଣ୍ଡାଙ୍କଠାରେ କୃତଜ୍ଞ ।

ବନ୍ଧୁ ଶ୍ରୀ ଲିଙ୍ଗରାଜ ପଣ୍ଡା ଏହାର ପ୍ରକାଶନର ଦାୟିତ୍ୱ ନେଇଥିବାରୁ ତାଙ୍କୁ ମୁଁ ସବିଶେଷ ଧନ୍ୟବାଦ ଜଣାଉଛି ।

ଶେଷରେ ନାଟକଟିର ଦୋଷ ତ୍ରୁଟି ବାଛି ଏହାର ଯଥାଯଥ ବିଚାର କରିବା ପାଇଁ ସହୃଦୟ ପାଠକମାନଙ୍କଠାରେ ନମ୍ର ନିବେଦନ ଜଣାଉଛି ।

ଜ୍ୟୋତିବିହାର<br>
ଦୋଳପୂର୍ଣ୍ଣିମା, ୧୯୭୬

ଅନନ୍ତ ଚରଣ ଶୁକ୍ଳ

# ପ୍ରଥମ ଅଙ୍କ

## ଦୃଶ୍ୟ ଏକ

[କଟକର ଭିକ୍ଟୋରିଆ ସ୍କୁଲ ନିକଟସ୍ଥ ମଧୁସୂଦନ ରାଓଙ୍କ ବାସଗୃହ । ନୂତନ କରି ଇଂରାଜୀର ପ୍ରଭାବ ଓଡ଼ିଶାରେ ପଡ଼ୁଛି । ବେଶଭୂଷା, ଚାଲିଚଳନ, ବ୍ୟବହାର ସବୁଥିରେ ଇଂରାଜୀର ରୂପ । ବ୍ରାହ୍ମଧର୍ମର ପ୍ରଭାବରେ ମଧୁସୂଦନଙ୍କର ଗୃହ ଏବେ ଯେମିତି ନୂତନ ପ୍ରାଣରେ ଉଜ୍ଜୀବିତ ହୋଇ ଉଠିଛି ! ସନ୍ଧ୍ୟାର କିଛି ସମୟ ପରେ । ପରଦା ଉଠିଲା ପରେ ଦେଖାଗଲା ମଧୁସୂଦନଙ୍କର ତୃତୀୟା କନ୍ୟା ଶାନ୍ତଲତା ଗୋଟିଏ ହାତରେ ଗଦାଏ ବହି ଓ ଅନ୍ୟ ହାତରେ ଲଣ୍ଠନ ଧରି ପ୍ରବେଶ କରୁଛନ୍ତି ଗୋଟିଏ ପାଖରୁ । ଅନ୍ୟ ପାଖରୁ ପ୍ରବେଶ କରୁଛନ୍ତି ମଧୁସୂଦନ । ପରିଧାନରେ ଧୋତି ଖଣ୍ଡିଏ ଓ ଖଣ୍ଡିଏ ଚାଦର । ଶାନ୍ତଲତା ବହିଗଦାକ ଟେବୁଲ ଉପରେ ରଖିଦେଇ ଲଣ୍ଠନଟାକୁ ଟିକିଏ ତେଜିଦେଲେ । ଟେବୁଲ ଉପରେ ରଖିବାକୁ ଯିବା ସମୟରେ ମଧୁସୂଦନ ମନାକଲେ । ]

ମଧୁସୂଦନ—ନା-ନା ମା, ଥାଉ ଥାଉ । ଲଣ୍ଠନଟା ଟିକିଏ କମାଇ ଦେ । ଆଜି ସବୁ ମୋତେ ଖାଲି ଅନ୍ଧାର ଦେଖାଯାଉଛି ; ମୁଁ କିଛି କାହିଁକି ଭାବିପାରୁ ନାହିଁ । କ'ଣ ଯେ ସବୁ ହୋଇଗଲା ମୋର । ମା ଶାନ୍ତ, ଆରେ....ନା-ନା ତୁ ଯା-ମା, ତୁ ଯା—ଯା, ପଢ଼ାପଢ଼ି କ'ଣ କରିବୁ ବୋଲି କହୁଥିଲୁ ଯା....

ଶାନ୍ତ—ବାପା—

ମଧୁସୂଦନ—ନା-ନା ମା (ବିଚଳିତ ହୋଇ) ତୁ ପିଲା ଲୋକ । ତୁ କିଛି ଜାଣିପାରିବୁ ନାହିଁ । ଜାଣୁ ମା, ମଣିଷ ଆଘାତ ପାଇଲେ କେମିତି ପ୍ରତିଘାତ କରିବାକୁ ବ୍ୟାକୁଳ ହୋଇପଡ଼େ ? ନା-ନା ତୁ ଯା-ଯା-ଯା, ସନ୍ଧ୍ୟା ପ୍ରାର୍ଥନା କରି ସାରିବୁ ତ ? ପ୍ରାର୍ଥନାର ବେଳ ଗଡ଼ିଯାଉଛି । ଯଦି ସାରି ନ ଥାଉ ତାହାହେଲେ ଶୀଘ୍ର ସାରିନେବୁ ଯା ।

( ଶାନ୍ତଲତା ଏକ ସନ୍ଦିଗ୍ଧ ଚାହାଣି ଦେଇ ଚାଲି ଯାଉଥିଲେ । ପୁଣି ଡାକିଲେ ମଧୁସୂଦ.)

ମଧୁ—ମା ଶାନ୍ତି, ଆରେ ଚାଲିଗଲୁ କି ? ଶୁଣ୍ ମା, ଶୁଣ୍ । ଭୁଲି ଯାଉଛି । ସବୁ ଯେମିତି ଆଜି ମୁଁ ଭୁଲି ଯାଉଛି । ଜୀବନର ଦୀର୍ଘକାଳବ୍ୟାପୀ ମୋର ଏହି କର୍ତ୍ତବ୍ୟନିଷ୍ଠ ଶରୀର ଆଜି ଯେପରି ସବୁକିଛି ଭୁଲିଯିବାକୁ ଚାହୁଁଛି । ଯାଉ-ସବୁ ଭୁଲିଯାଉ । ଯୁଗ ଯୁଗ ଧରି ଯେଉଁ ଆଶା ଆକାଂକ୍ଷାର ଉତ୍ସବ ସେ କଳ୍ପନା କରି ଚାଲିଥିଲି ସବୁ ଭୁଲିଯାଉ; ହିଁ ଭୁଲିଯିବା ହିଁ ତା'ର ଧର୍ମ । ସେଇଥିରେ ତା'ର ମଙ୍ଗଳ ।

ଶାନ୍ତି—କ'ଣ ହେଇଛି ବାପା, ଆପଙ୍କର ଆଜି ?

ମଧୁ—ଜାଣିଛୁ ମା, ନନ୍ଦକିଶୋର ଆଜି ଗାଁକୁ ଚାଲିଗଲା ।

ଶାନ୍ତି—କାହିଁକି, ସେ ତ ଏମିତି କେତେଥର ଯାଇଛନ୍ତି ପୁଣି କେତେଥର ଆସିଛନ୍ତି ।

ମଧୁ—ଗଲାବେଳେ ତୋତେ ଦେଖାକରି ଯାଇଛି ?

ଶାନ୍ତି—ନା'ତ ! ସେ ତ ଆଜି ଆସିନାହାନ୍ତି ଏଠିକି !

ମଧୁ—ନାଃ-ଆସିବାର ପ୍ରୟୋଜନ ମଧ୍ୟ ନ ଥିଲା ତାର । କାହିଁକି ବା ସେ ଆସିବ ? କି ସମ୍ବନ୍ଧ ତାର ଏଠି ? ଗୁରୁ-ଶିଷ୍ୟ ସମ୍ବନ୍ଧ ତ ବହୁଦିନୁ ତୁଟିଛି । ଯେଉଁ ସମ୍ବନ୍ଧ ଟିକକ ଚିରଦିନ ଲଗାଇ ରଖିବ ବୋଲି ଆଶା କରିଥିଲି, ସେ ସମ୍ବନ୍ଧ ଟିକକ ସେ ଆଜି ଭାଙ୍ଗିଦେଇ ଚାଲିଯାଇଛି । ଯାଉ-ଯାଉ ସେ । ହୃଦୟର ନିଭୃତ କୋଣରୁ ସ୍ମୃତି ଟିକକ ତାର ଲିଭିଯାଉ । ଅବଚେତନ ମନ ତଳେ ରୂପ ତାର ନିଶ୍ଚିହ୍ନ ହୋଇଯାଉ ।

ଶାନ୍ତି—ବାପା......

ମଧୁ—ମୋତେ ଆଜି ନନ୍ଦକିଶୋର ସ୍ପଷ୍ଟ ମନା କଲା । ସେ ବ୍ରାହ୍ମ ହୋଇ ପାରିବ ନାହିଁ କିନ୍ତୁ ଜାଣୁ ମା ! ଓଡ଼ିଶାର ଏହି ଅନ୍ଧକାର ବେଳାରେ ସନ୍ତ୍ରିବତର ମୁମୂର୍ଷୁ ଆଲୋକରେଖାକୁ ଉଦ୍ଦୀପିତ କରିବାରେ ଶକ୍ତି ତା' ଠାରେ ମୁଁ ଦେଖିପାରିଥିଲି । ଆଉ ସେଥିପାଇଁ ଅନେକ ଥର ମୁଁ ତାକୁ ପରୋକ୍ଷରେ କେତେ ଉପଦେଶ ନ ଦେଇଛି; କିନ୍ତୁ ହେଲାନାହିଁ । ଯାହା ହବାର ନୁହେଁ ତା କଦାପି ହୋଇପାରିବ ନାହିଁ । ନନ୍ଦକିଶୋର ବିପକ୍ଷରେ ତୋର ସମସ୍ତ ଆଶା ଭରସା ଭାଙ୍ଗି ଚୂରମାର ହୋଇଯାଇଛି । ଭାବିଥିଲି ବି. ଏ. ପାଶ କଲାପରେ ତାକୁ ବ୍ରାହ୍ମ କରିଇ ଭିକ୍ଟୋରିଆ ସ୍କୁଲର ହେଡ୍‌ମାଷ୍ଟର କରାଇ ମୁଁ ନିଶ୍ଚିନ୍ତ ହେବି । ତାର ଦାୟିତ୍ୱ ସେ ସମ୍ଭାଳିବ । ତୁମ ଦୁହିଁଙ୍କର ମଙ୍ଗଳ ଚିନ୍ତାକରି ମୁଁ ଆଖି ବୁଜିଥାନ୍ତି । କିନ୍ତୁ......

ଶାନ୍ତ —(ସବୁ ବୁଝିପାରଲେ) ପୁଣି କାହିଁକି ବାପା ସେ ସବୁର ପୁନରାବୃତ୍ତି । ଶୋଇ ପଡ଼ନ୍ତୁ । ଆଜି ଆଉ କିଛି ପଢ଼ାପଢ଼ି କରନ୍ତୁ ନାହିଁ । ଏ ବୟସରେ ଯଦି ଆପଣ ଏପରି ପରିଶ୍ରମ କରନ୍ତି ତାହେଲେ ଦେହର ଅବସ୍ଥା କ'ଣ ହେବ ? କେହି ଗୋଟାଏ ପାଖରେ ନାହାନ୍ତି । ସେଥିରେ ପୁଣି……

ମଧୁ –ମୁଁ ଜାଣେ ମା ! ସବୁ ଜାଣେ । କିନ୍ତୁ ଆବାଲ୍ୟରୁ ଯେଉଁ ଅଭ୍ୟାସ ମୋର ରହିଆସିଛି ତାକୁ ମୁଁ ଛାଡ଼ି ପାରୁଛି କେତେକ କହିଲୁ ? ମୋର ଏହି ପରିଶ୍ରମ ଉପରେ ଭ୍ରାମ୍ୟମାଣ ଜୀବିକା ଆହୁରି ମୋତେ ଦୁର୍ବଳ କରି ପକାଇଛି । ମା—ମୁଁ ଆ—ଜି ଅତ୍ୟନ୍ତ କ୍ଳାନ୍ତ । ହୃଦୟର ସ୍ପନ୍ଦନ ଯେପରି ମୋର ବନ୍ଦ ହୋଇ ଆସୁଛି । ଦେଖିଲୁ –ଦେଖିଲୁ ମା ମୋର ହାତଟା । ମଣିବନ୍ଧଟା ମୋର ଜଡ଼ ହୋଇ ଗଲାନା କ'ଣ…

ଶାନ୍ତ – (ହାତର ମଣିବନ୍ଧର ଗତି ପରୀକ୍ଷା କରି) ନା –ବାପା ଆପଣ ଆଜି ଶୋଇ ପଡ଼ନ୍ତୁ । ନାଡ଼ିର ଗତି ଠିକ୍ ଭାବରେ ଚାଲିଛି । ଆପଣ ଆଜି ନିତାନ୍ତ ଅସୁସ୍ଥ । ଶୋଇ ପଡ଼ନ୍ତୁ ।

ମଧୁ –ହଁ -ହଁ, ମୁଁ ଶୋଇବି । ମୁଁ ତୋ କଥା ମାନିବି । ମୁଁ ତୋର ଅବାଧ୍ୟ ପୁଅଟିଏ । ମୁଁ ତୋର ଚଗଲା ପୁଅ । ଏତେଦିନକେ ତୋର ବୋଲ ମାନୁଛି । ନୁହେଁ ନା ମା ? ହଁ, ଚାଲ —

( ଶାନ୍ତଲତା ଧୀରେ ଧୀରେ ବାପାଙ୍କୁ ଧରି କଣରେ ଥିବା ଏକ ଖଟିଆରେ ଶୁଆଇ ଦେଇ ଧୀରେ ଧୀରେ ପଙ୍ଖା କରିବାକୁ ଲାଗିଲେ । )

ମଧୁ - ମା—ମନେ ଅଛି ସେ ସ୍ତବଟି ଯାହାକୁ ମୁଁ ଖୁବ୍ ଭଲପାଏଁ ?

ଶାନ୍ତ —ଗାଇବି ବାପା ?

ମଧୁ – ହଁ-ମା, ବୋଲ୍ ବୋଲ ସେହି ସ୍ତବଟି । ସବୁ ଚିନ୍ତା, ସବୁ ଗ୍ଳାନି ମୋର ମନରୁ ଦୂର ହୋଇଯାଉ । ମାୟାମୟୀ ନିଦ୍ରାର କୋଳରେ ମୁଁ ସୁଷୁପ୍ତିରେ ଶୋଇପଡ଼େ । ଭୁଲିଯାଏଁ …ସବୁ ଯେମିତି ଭୁଲିଯାଏଁ …

(ଶାନ୍ତଲତା ଗାଇବାକୁ ଲାଗିଲେ ଅତି ଲଳିତ ଅଥବା ମଧୁର କଣ୍ଠରେ)

( ଗୀତ )

ଆମାର ମଥା ନତ କରେ ଦାଓ ହେ ତୋମାର
ଚରନ ଧୂଲିର ତଲେ,
ସକଲ ଅହଙ୍କାରେ ହେ ଆମାର ଡୁବାଓ
ଚୋଖେର ଜଲେ

ନିଜେରେ କରିତେ ଗୌରବ ଦାନ
ନିଜେରେ କେବଲି କରି ଅପମାନ

ଆପନାରେ ଶୁଧୁ ଘେରିଆ ଘେରିଆ

ଘୁରେ ମର ପଲେ ପଲେ

ସକଲ ଅହଙ୍କାର ହେ ଆମାର ଡୁବାଓ ଚୋଖେର ଜଲେ । ୧ ।

ଯାଚ ହେ ତୋମାରେ ଚରମ ଶାନ୍ତି

ପରାନେ ତୋମାର ପରମ କାନ୍ତି

ଆମାରେ ଆଡ଼ାଲ କରିଆ ଦାଡ଼ାଓ

ହୃଦୟ ପଦ୍ମଦଲେ

ସକଲ ଅହଙ୍କାର ହେ ଆମାର ଡୋବାଓ

ଚୋଖେର ଜଲେ । ୨ ।

(ଗୀତ ଶେଷ ହୋଇଯିବା ପରେ ଶାନ୍ତିଲତା ଉଠିଆସିଲେ ଧୀରେ ଧୀରେ । ମଧୁସୂଦନ ଶୋଇଥାନ୍ତି । ଟେବୁଲ ଉପରେ ଥିବା ଲଣ୍ଠନଟିକୁ କମାଇନେଇ ସେ ଭିତରକୁ ଚାଲିଯାଉଥିଲେ । ଅପର ପାର୍ଶ୍ୱରୁ ପୁଣି ଆସିଲେ ରେବା—ଯୁବତୀ ଅଥଚ ବିଧବା—ମଧୁସୂଦନଙ୍କର ସାନ ଭାଇଙ୍କର ଝିଅ ଝିଅଟି । ସେ ଧୀରେ ଧୀରେ ଗୋଡ଼ ଟିପିଟିପି ପ୍ରବେଶ କରି ଖୁବ୍ ଧୀର ସ୍ୱରରେ ଡାକଲେ)

ରେବା—ଶାନ୍ତି ଶା··· ନ୍ତି···· (ଶାନ୍ତି ଫେରି ଆସିଲେ)

ଶାନ୍ତି—କିଏ ? ରେବା ଦେଇ ? କାଲେ ତୋର ତ ଦେଖା ନ ଥିଲା ଦୁଇଦିନ ହେବ ? କୁଆଡ଼େ ଯାଇଥିଲୁ କି ? ଏକଲାଟା ରହି ମୋତେ ଖରାପ ଲାଗିଲାଣି, ସବୁ ତୋ ଉପରେ ଆଜ ପୁଝାଇବି କହୁଛି । (ଲଣ୍ଠନଟା ତେଜି ଦେଲେ । ଦୁହେଁ ଦୁଇଟି ଚେୟାରରେ ବସିଲେ)

ରେବା—ଅଭାଗିନୀଟା ମୁଁ । କୁଆଡ଼େ ଯିବି ଲୋ ଅଉ ? ଜାଣୁ ତ ମୋ ବେଉସା କଥା । ଲୋକେ ଭଲ କହନ୍ତୁ, ମନ୍ଦ କହନ୍ତୁ ଯାହାପାଇଁ ମୋ ଜୀବନରେ ମୁଁ ପଣ କରିଆସିଛି । ତାକୁ କେବେ ଛାଡ଼ିପାରିବି ନାହିଁ ।

ଶାନ୍ତି—ଯିଏ ଯାହା କହୁନା କାହିଁକି ରେବା ଦେଇ, ବାପାଙ୍କର ଏକା ତୋ ଉପରେ ଭାରି ସୁ-ନଜର । ତୋ କାମକୁ ସେ ଖୁବ୍ ପସନ୍ଦ କରନ୍ତି । ମଣିଷ ଜନ୍ମ ହୋଇଥାଏ ଗୋଟାଏ ଆଶା ନେଇ । ଆଶା ଆଉ ଆକାଂକ୍ଷା ବିନା କେହି କେବେ ବଞ୍ଚି ରହିପାରେନା । କିନ୍ତୁ କହିଲୁ ରେବା ଦି' ସବୁ ଲୋକଙ୍କର କ'ଣ ସବୁ ଆଶା ପୂର୍ଣ୍ଣ ହୋଇପାରେ ?

ରେବା—ମୁଁ ସବୁ ବୁଝିପାରୁଛି ଲୋ ଶାନ୍ତି । ସେଥିପାଇଁ ତ ସବୁ କାମଦାମ ଛାଡ଼ି ଏକା ନିଶ୍ୱାସରେ ଦଉଡ଼ି ଆସିଛି ତୋ ପାଖକୁ । ଭଗବାନ ତ ମୋ କପାଳ ପୋଡ଼ି କାଳି ପାଉଁଶ କରିଦେଲେ । ଯେଉଁ ରତ୍ନଦ୍ୱୀପର ଜଳ

ପିଇବାକୁ ଆଶା କରିଥିଲି, ମୋ ମନର ରଜାପୁଅ ସେ ପାଣି ମୋତେ ଆଣି ଦେବାକୁ ସମ୍ପୂର୍ଣ୍ଣ ଅକ୍ଷମ । କାହିଁକି ଜାଣୁ ? ସେଠି ଯେଉଁ ରତ୍ନପୁରୀର ରାଜଜେମା ସୁନାର ମାଛ ଧରିବା ପାଇଁ ଜାଲ ପାତି ବସିଛି, ତା'ର ଜାଲରେ ପଡ଼ିଛନ୍ତି ସେ ମନର ରଜାପୁଅ । ସେଇ ଜାଲରେ ଛନ୍ଦି ହୋଇ ଆଉ ସେ ମୁହଁ ଟେକିପାରୁ ନାହାନ୍ତି । କିନ୍ତୁ ସେ ଜାଣିପାରି ନାହାନ୍ତି ଯେ ସେଇ ରଜାଝିଅଟି ମୋର ଖେଳସାଥୀ, ମୋର ପ୍ରାଣଠାରୁ ବଳି ପ୍ରିୟ । କିନ୍ତୁ ଶାନ୍ତି.......

ଶାନ୍ତି କହିଲୁ ରେବା ଦି', ତୋ'ର ସେଇ ରଜାପୁଅଟି କିଏ ? (ହସି ହସି)

ରେବା—ନାଇଁ ଲୋ, ଏ ପୋଡ଼ା କପାଳରେ କଣ ଆଉ ହଁସୁଲି ଶେଯରେ ଶୋଇ ଶୋଇ କଳ୍ପନାରାଇଜର ରାଜକୁମାରର ସ୍ୱପ୍ନ ଦେଖିବାର ବେଳ ଅଛି ? ସୁକୁମାରୀ ଅଲଥଲି ରାଜକନ୍ୟା ତୁ । ତୋର ସିନା... !

ଶାନ୍ତି—ଖୁବ ସିଆଣୀ ଲୋ ତୁ ? କେଉଁ କଥା ଆଣି କେଉଁଠି ଯୋଇଲୁ । ହେଲେ ମୁଁ ଜାଣେ ଲୋ ଜାଣେ । ସବୁ ଜାଣେ । ତୋ ମନ କଥା କ'ଣ ମୋ ପାଖରେ ଅଜଣା ଥାଏ ?

ରେବା—(ହସି ହସି ଶାନ୍ତିର ଚିବୁକ ଧରି) ସତେ ? କହିଲୁ ମୋତେ କେଉଁ ରଜାପୁଅ ତୋର ସେଇ ଜାଲରେ ଛନ୍ଦି ହୋଇପଡ଼ିଛନ୍ତି ?

ଶାନ୍ତି—(ଗମ୍ଭୀର ହୋଇ) କିନ୍ତୁ ରେବା ଦି' ... (ଆଖି ଛଳ ଛଳ ହେଲା)

ରେବା—ଶାନ୍ତି ! (ଅତି କୋମଳ ତଥା ସମବେଦନାର ସ୍ୱର) ମେଘ ଆଡ଼ମ୍ବର ଦେଖି ସିନା ମୟୂର ନାଚେ' କିନ୍ତୁ ମୟୂର ନାଚିଲେ କ'ଣ ମେଘ ଆସିବ ନାହିଁ ? ଛି ପାଗଲୀଟା, କାନ୍ଦନା (ଲୁହ ପୋଛିଲେ) ।

ଶାନ୍ତି—(କାନ୍ଦି ପକାଇ) ସବୁ ଆଶା ମୋର ଧୂଳିପରି ମିଳେଇଗଲା ରେବା ଦି' ।

ରେବା - କହୁଛି ପରା ତୁ ମୟୂରୀ ଆଉ ସେ ମେଘ । ମୁଁ ବି ଆଷାଢ଼ର ସେହି ପ୍ରଥମ ଦିବସରେ ସେହିପରି ନାଚିଥିଲି । କିନ୍ତୁ ଶାନ୍ତି ଲୋ ! ସେ ମେଘ ଆଉ ବରଷିଲା ନାହିଁ । ଯକ୍ଷ କନ୍ୟାର ବାରତା ନେଇ ବରଷା ଯକ୍ଷର ବେଦନା ଯେ ବହନ କରେ ସେ କ'ଣ ଗୋଟାଏ ବିରହିଣୀ ମୟୂରୀର ନାଚକୁ ଦେଖି ଭୁଲିଯିବ ? ମୋର ସବୁ ଭ୍ରମ ହେଲା, ଶାନ୍ତି । ଅବଚେତନ ମନର କେଉଁ ଏକ କୋଣରେ ସବୁକୁ ଚାପିପକାଇ ମୁଁ ତା ସହିତ ଗାଇ ବସିଲି ଅନ୍ୟ ଏକ ସମ୍ବନ୍ଧ । ହେଲେ ଶାନ୍ତି, ସତ କହୁଛି ଏମିତି ଘଟଣା ଘଟିବ ବୋଲି ମୁଁ ଆଗରୁ ଜାଣିଥିଲି ।

ଶାନ୍ତି—(ଆହତ ହୋଇ) ରେବା ଦି'......

ରେବା— ହଁ ଶାନ୍ତ, ମୁଁ ସତ କହୁଛି, ନନ୍ଦକିଶୋର ବାବୁଙ୍କୁ ମୁଁ ଭଲଭାବରେ ଜାଣିପାରିଥିଲି ମୋର କଥାରୁ । ସେ କଥାର ମଣିଷ ନୁହଁନ୍ତି, ରୂପର ମଣିଷ ନୁହଁନ୍ତି—ଜ୍ଞାନର, ଚରିତ୍ରର, ପ୍ରତିଭାର । ତାଙ୍କଠାରେ ଯେଉଁ ପ୍ରତିଭାର ଦୀପ୍ତ ଶିଖା ମୁଁ ଦେଖିଥିଲି, ସତ କହୁଛି ଶାନ୍ତ; ସେ ଶିଖାରେ ଆମ ଭଳି ନାରୀ ଜଳି ପୋଡ଼ି ପାଉଁଶ ହୋଇଯିବ ପଛେ, ସାମାନ୍ୟ କମ୍ପନ ବି ସୃଷ୍ଟି କରିପାରିବା ନାହିଁ ।

ଶାନ୍ତ— ମୋତେ ଏ କଥା ତୋର ଆଗରୁ କହିବାର ଥିଲା ରେବା ଦି' ।

ରେବା— କିନ୍ତୁ ଶାନ୍ତ "ହେମ କୁରଙ୍ଗୀ ନ ଚ ପୂର୍ବଦୃଷ୍ଟା, ନ ଶ୍ରୂୟତେ ବେଦ ପୁରାଣେ ଗୀତେ" ତଥାପି ରାମଚନ୍ଦ୍ର ତା'ର ମାୟାରେ ପଡ଼ି ଯାଇଥିଲେ । ଆମେ ତ ଛାର ନାରୀ । ମରୀଚିକା ବୋଲି ଜାଣିପାରିବା ପରେ ବି ପାଣି ପାଇଁ ଦଉଡ଼ିବା । ମୋ ସୁନାଝିଅ ପରି ! ପଛ କଥା ସବୁ ମନରୁ ପୋଛି ଦେ, କିନ୍ତୁ ଶାନ୍ତ......

ଶାନ୍ତ—କହ ।

ରେବା—(ଧୀରେ) ଗୋଟିଏ କଥା ପଚାରିବି । କହିବୁ ?

ଶାନ୍ତ— ତୋ ପାଖରେ ମୋର କିଛି ଅଛପା ଥାଏ କିଲେ ରେବା ଦି' ?

ରେବା—(କାନରେ କିଛି ଚୁପ ଚୁପ କରି କହିଲେ)

ଶାନ୍ତ—(ଯେପରି ଆର୍ତ୍ତନାଦ କରି ଉଠିଲେ) ରେବା ଦି'...

ରେବା— ହଁ ଶାନ୍ତ, ମୁଁ ସ୍ପଷ୍ଟଭାବରେ ସେ ଲକ୍ଷଣ ତୋଠାରେ ଦେଖି ପାରୁଛି ।

ଶାନ୍ତ—(ନିତାନ୍ତ ବିଚଳିତ ହୋଇ) ଥାଉ, ଥାଉ ରେବା ଦି' ! ସେ କଥା ମୋତେ ତୁ ଆଉ ଶୁଣାନା—ମୋତେ ସବୁ ଅନ୍ଧାର ଦେଖାଯାଉଛି । ମୁଁ ପାଗଳ ହୋଇଯିବି । ଏ ସବୁ ମୋତେ ପାଗଳ କରିଦେବ ।

( ଉଠିପଡ଼ିଲେ ହଠାତ୍ ଉତ୍ତେଜନାରେ )

ରେବା—(ସେ ମଧ୍ୟ ଉଠିପଡ଼ିଲେ) ଧୀରେ ଶାନ୍ତ, ଧୀରେ ! ବାପା ଶୋଇଛନ୍ତି ଯେ । ଉଠିପଡ଼ିଲେ ମହାନ୍ ଏକ କାଣ୍ଡ କରିବସିବେ । ବ୍ରାହ୍ମ ଘରର ଝିଅ ତୁ । ସେଥିକୁ ତୋର ଡର କଣ ? କିନ୍ତୁ ଶାନ୍ତ, କହିଲୁ ସତେ ସେହି ପୁରୁଷଟି କିଏ ।

ଶାନ୍ତ—(ଅଧିକ ଉତ୍ତେଜନାରେ—ସ୍ପୃହାକଣ୍ଠରେ) ମୋତେ କ୍ଷମା କର ରେବା ଦି', ଜୀବନରେ ପ୍ରଥମ କରି ମୋତେ ଲୁଚାଇବାକୁ ପଡୁଛି ଏଇ ଗୋଟିଏ କଥା ଯାହାକୁ ମୁଁ କଦାପି ଖୋଲି ପାରିବି ନାହିଁ । ନା କଦାପି କହିପାରିବି ନାହିଁ । କିନ୍ତୁ ରେବା ଦି', ମୁଁ ଜୋର ଦେଇ କହୁଛି ନନ୍ଦକିଶୋର

ବାବୁଙ୍କୁ ସନ୍ଦେହ କଲେ ତୁ ଖୁବ୍ ଭୁଲ କରି ବସିବୁ ନିଷ୍ପାପ । ପ୍ରସ୍ଫୁଟିତ
ଗୋଲାପ ପରି ସେ ଢଳ ଢଳ । ଅଗ୍ନିଶିଖା ପରି ସେ ପବିତ୍ର, ମହାନ୍ ।
ସେ ମୋର ଜୀବନର ଆଦର୍ଶ —

( ଭିତରକୁ ଚାଲିଗଲେ ଅଥୟ ହୋଇ )

ରେବା – ଶାନ୍ତି ! ଆଲୋ ଚାଲି ଗଲୁନା କ'ଣ ମ ଶାନ୍ତି—

ଶାନ୍ତି—(ଭିତରେ କହି କହି ଚାଲି ଯାଉଥାନ୍ତି) ନା-ନା ମୋତେ କ୍ଷମାକର
ରେବା ତ' ଜୀବନରେ ମୁଁ କଦାପି ଏ ଭୁଲ କରିବି ନାହିଁ । ମୁଁ ତୋତେ
ଏହାର ଉତ୍ତର କଦାପି ଦେଇପାରିବି ନାହିଁ ।

ରେବା—(ଈଷତ୍ ହସି) ଜାଣେ ଲୋ ଜାଣେ । ମୁଁ ସବୁ ଜାଣେ ତୋ କଥା, କ'ଣ
ମୋତେ କିଛି ଅଜଣା ଥାଏ (ବିଦ୍ରୂପ ହସ)



## ଦୃଶ୍ୟ ଦୁଇ

[ କୁସୁପୁର ଗ୍ରାମ ନିକଟସ୍ଥ ପଟ୍ଟାମୁଣ୍ଡାଇ କେନାଲର ଏକ ଦୃଶ୍ୟ । ଦୂରରେ ଦେଖାଯାଏ ଲଳିତଗିରିର କିୟଦଂଶ ପୃଷ୍ଠପଟରେ ଆଲମଗିରିର ଲତାଗୁଳ୍ମ ଶୋଭି ସବୁଜ ବନାନୀ— କେନାଲ ଧାରେ ଧାରେ ତାଳ ଖଜୁରିର ସମାରୋହ । ଗୋଟିଏ ପାଖରୁ ପଶି ଆସିଲେ ଯୁବକ ନନ୍ଦକିଶୋର ଓ ତାଙ୍କର ସମ୍ପର୍କୀୟ ପୃତୁରା ତଥା ପରମବନ୍ଧୁ ସୂର୍ଯ୍ୟମଣି ଜେନା । ଦୁହିଁଙ୍କର ବେଶ ଖାଣ୍ଟି ଓଡ଼ିଆ ଧରଣର । ନନ୍ଦକିଶୋରଙ୍କର ନାକତଳେ ସରୁ ନିଶ । ସୂର୍ଯ୍ୟମଣି ତାଙ୍କଠାରୁ ବୟସରେ ସାନ ହେବେ । ସମୟ—ସୂର୍ଯ୍ୟାସ୍ତର କିଛି ପୂର୍ବରୁ । ]

ନନ୍ଦ—ଏହି ବିରୂପା କୂଳ । ଏଇ ପଟ୍ଟାମୁଣ୍ଡାଇ କେନାଲର ଦିଗନ୍ତପ୍ରସାରି ଗତି ଆଉ ଦୂରରେ ଲଳିତଗିରି । ଆଲମଗିରିର ନଭଶ୍ଚୁମ୍ବୀ ବିସ୍ମୃତିକୁ ମୁଁ କଣ କେବେ ଭୁଲିପାରିବି ସୂର୍ଯ୍ୟମଣି ?

ସୂର୍ଯ୍ୟ—କିନ୍ତୁ ନନ୍ଦକିଶୋର ବାବୁ ! ଗୋଟିଏ ଝିଅର ସମସ୍ତ ଆଶା ଭରସାକୁ ଏପରି ଭାବରେ ନଷ୍ଟ କରିଦେବାଟା କ'ଣ ଆପଣ ଠିକ୍ ବୋଲି ଭାବିଛନ୍ତି ?

ନନ୍ଦ—ତୁମେ ଏବେ ମଧ୍ୟ ମୋ ଠାରୁ ବୟସରେ ସାନ ସୂର୍ଯ୍ୟମଣି ! ସହରର ବାତାବରଣ, ସହରର ସଭ୍ୟତା ଓ ଗ୍ଲାମରରେ ତୁମେ ସହଜରେ ଭୁଲି ଯାଇପାରିବ । କିନ୍ତୁ ସେହି ଗ୍ଲାମରର ବାହ୍ୟ ଆବରଣ ତଳେ କେମିତି ନରକପୁରୀର ବୀଭତ୍ସତା, ପ୍ରବଞ୍ଚନା ପୂରି ରହିଛି ତାହା ଜାଣିବାକୁ ତୁମ ପକ୍ଷରେ ବହୁତ ବିଳମ୍ବ ଅଛି ସୂର୍ଯ୍ୟମଣି । ଯାହାକୁ ସରଳ, ନିଷ୍ପାପ ବାଳିକା ବୋଲି ଭାବିଛ, ଯଦି ପ୍ରକୃତରେ ବିଶ୍ଳେଷଣ କରିବାର ସୁଯୋଗ ପାଇଥାନ୍ତ ତେବେ ହୁଏତ ତୁମେ ଆଜି ଏ ପ୍ରକାର ଆତ୍ମଗ୍ଲାନିର ଶିକାର ହୋଇ ନ ଥାନ୍ତ ।

ସୂର୍ଯ୍ୟ - ତେବେ କ'ଣ....

ନନ୍ଦ—ନା ସୂର୍ଯ୍ୟମଣି, ତୁମର ସନ୍ଦେହ ଅମୂଳକ ନୁହେଁ । କିନ୍ତୁ ତଥାପି ମୁଁ ତୁମକୁ ତାହା ବୁଝାଇବାକୁ ସମ୍ପୂର୍ଣ୍ଣ ଅକ୍ଷମ । ତେବେ ଏତିକି ଜାଣିରଖ, ପଲ୍ଲୀଗାଁର ଏ ସରଳ-ସୁନ୍ଦର ସାବଲୀଳ ବିରୂପାଠାରୁ ସହର ଦେଇ ଯାଇଥିବା

ମହାନଦୀର ଉଦ୍ଧତ ଛଳ ଛଳ ଢେଉ ଆଉ ଗର୍ଜ୍ଜନ କଦାପି ଶୋଭନୀୟ ନୁହେଁ । ଗୋଟାଏ ପକ୍ଷରେ ଅଙ୍କତାର ନିଷ୍କପଟ ଗତି, ଅନ୍ୟ ପକ୍ଷରେ ବଙ୍କତାର ଉଦ୍ଦାମ ସ୍ରୋତ । ତୁମେ କ'ଣ ସେହି ଉଦ୍ଦାମ ସ୍ରୋତରେ ଭାସିଯିବାକୁ ଚାହୁଁଛ ସୂର୍ଯ୍ୟମଣି ?

ସୂର୍ଯ୍ୟ—ଆପଣଙ୍କ ବିଷୟରେ ସବୁ ଜାଣିଶୁଣି ବି ଆପଣଙ୍କର ବ୍ୟକ୍ତିତ୍ୱ ଭିତରେ ମୁଁ ସମସ୍ତ ସମୟରେ ମୁହ୍ୟମାନ ହୋଇପଡ଼େ ନନ୍ଦକିଶୋର ବାବୁ ! ନାରୀ ଚରିତ୍ରର ଅନୁଶୀଳନ କରିବାର ଶକ୍ତି ଏକା ମୋର କାହିଁକି ଯେ କୌଣସି ମାନବ ପକ୍ଷରେ ଦୁରୂହ । ସେଇ ଦୃଷ୍ଟିରୁ ...

ନନ୍ଦ—ତୁମେ ଭୁଲ ବୁଝିଲ ସୂର୍ଯ୍ୟମଣି ! ନାରୀ ଚରିତ୍ରର ଅନୁଶୀଳନ କରିବାର ଶକ୍ତି ମୋର ନାହିଁ କିମ୍ବା କୌଣସି ଦିନ ତାହା କରିବାର ଦୁଃସାହସ ମଧ୍ୟ ମୁଁ କରିନାହିଁ । ଆବାଲ୍ୟରୁ ଯେଉଁ ପଲ୍ଲୀଗାଁର କୋଳରେ ମୁଁ ବଢ଼ି ଆସିଛି, ଯାହାର ମୁକ୍ତ ବାୟୁ, ମୁକ୍ତ ଆକାଶ ମୋତେ ଦେଇଛି ନୂତନ ଜୀବନର ସନ୍ଧାନ ଏତେ ଶୀଘ୍ର କ'ଣ ମୁଁ ସେ ସବୁ ଭୁଲିଯିବି ? ହୃଦୟର ପ୍ରତିଟି ଅଣୁରେ ମଧ୍ୟ ସେ ଦୃଶ୍ୟାବଳୀ ଆଜି ବି ମୋର ପ୍ରତିଫଳିତ ହେଉଛି ସୂର୍ଯ୍ୟମଣି ! ଶାନ୍ତିଲତାକୁ ବିବାହ କରିଥିଲେ ମୁଁ ଶାନ୍ତି ପାଇଥାନ୍ତି; କିନ୍ତୁ ଜୀବନର ଆଦର୍ଶ ପାଇ ନ ଥାନ୍ତି । ଅନ୍ଧ ସଭ୍ୟତାର ପଛରେ ମୃଗ-ପାଗଳ ଦୁଷ୍ୟନ୍ତ ପରି ଧାଇଁ ଧାଇଁ ମୁଁ ଶକୁନ୍ତଳାକୁ ପାଇ ନ ଥାନ୍ତି ସୂର୍ଯ୍ୟମଣି ! ହେମକୁରଙ୍ଗୀ ପଛରେ ଧାଇଁ ସ୍ୱର୍ଣ୍ଣପୁରୀ ଲଙ୍କାକୁ କେବଳ ଦହନ କରିଥାନ୍ତି ସିନା !

ସୂର୍ଯ୍ୟ—(ଈଷତ୍ ହସି) କିନ୍ତୁ ସେହି ଶକୁନ୍ତଳା ଯଦି କଣ୍ୱ ମୁନିଙ୍କର ଆଶ୍ରିତା ହୋଇଥାଏ !

ନନ୍ଦ—ଭୁଲ ଯାଉଛ ତୁମେ, କଣ୍ୱମୁନି ଉର୍ଦ୍ଧ୍ୱରେତା । ତା ଛଡ଼ା ଯଦି ଶକୁନ୍ତଳା କଣ୍ୱମୁନିଙ୍କର କନ୍ୟା ହୋଇଥାନ୍ତା ତେବେ ଦୁଷ୍ୟନ୍ତଙ୍କର ତାକୁ ପାଇବା ପାଇଁ ଇଚ୍ଛା ମଧ୍ୟ ହୋଇ ନ ଥାନ୍ତା ସୂର୍ଯ୍ୟମଣି !

ସୂର୍ଯ୍ୟ—ଆପଣଙ୍କ ବାକ୍‌ଚାତୁରୀ ନିକଟରେ ମୋତେ ହାର ମାନିବାକୁ ପଡ଼ିଲା ନନ୍ଦକିଶୋର ବାବୁ ! ତଥାପି ଗୋଟାଏ ସନ୍ଦେହ ମୋର ମନରୁ ଯାଇପାରୁନାହିଁ । ମଧୁବାବୁ ଆପଣଙ୍କର ଶିକ୍ଷକ, ଉପଦେଷ୍ଟା ମଧ୍ୟ । ଆପଣଙ୍କୁ ବ୍ରାହ୍ମଧର୍ମରେ ଦୀକ୍ଷିତ କରାଇ ଓଡ଼ିଶାରେ ସେହି ଧର୍ମର ପ୍ରଚାର ପାଇଁ ସେ କେତେ ଆଶା କରି ନ ଥିଲେ ! କିନ୍ତୁ ଗୋଟାଏ ଦିନ ମଧ୍ୟରେ ଆପଣ ଚିନ୍ତାଧାରାକୁ ପରିବର୍ତ୍ତନ କରିପାରିଲେ ନନ୍ଦକିଶୋର ବାବୁ ! ପ୍ରକୃତରେ ମୋ ମନରେ ଏକ ସନ୍ଦେହର ଉଦ୍ରେକ କରିଛି ଆପଣଙ୍କର ଏହି ବିଚାର ପରିବର୍ତ୍ତନ ।

ନନ୍ଦ—ବିଚିତ୍ର ନୁହେଁ ସୂର୍ଯ୍ୟମଣି । ସ୍ୱାଭାବିକ ପରିବର୍ତ୍ତନ ଏ । "ସ୍ୱଧର୍ମେ ନିଧନଂ ଶ୍ରେୟଃ, ପରଧର୍ମୋ ଭୟାବହଃ" । ହିନ୍ଦୁଧର୍ମର ଏହି ଅମୋଘ ସତ୍ୟକୁ ମୁଁ ତ୍ୟାଗ କରି ଗୋଟାଏ ମରୀଚିକା ପଛରେ ଧାଇଁ ବୁଲିବି ବୋଲି ତୁମେ କ'ଣ ଭାବିପାରିଥିଲ ! ହିନ୍ଦୁର ଧର୍ମ ସନାତନ, ସେ ଚିରନ୍ତନ । ଯେଉଁ ସତ୍ୟକୁ ଶଙ୍କରାଚାର୍ଯ୍ୟ, ମନୁ, କପିଳାଦି ଶତମୁଖରେ ଶ୍ରେଷ୍ଠ ବୋଲି ଘୋଷଣା କରିଯାଇଛନ୍ତି, ସେ ସତ୍ୟକୁ କ'ଣ ସ୍ୱଳ୍ପାୟୁ, ସ୍ୱଳ୍ପବୁଦ୍ଧି ଧର୍ମପ୍ରବର୍ତ୍ତକ ବଦଳାଇ ଦେଇ ପାରିବେ ? ଅସମ୍ଭବ ।

ସୂର୍ଯ୍ୟ କିନ୍ତୁ ବୌଦ୍ଧ, ଜୈନ, ବୈଷ୍ଣବ ପ୍ରଭୃତି ଧର୍ମ ତ ପୁଣି ଏ ପର୍ଯ୍ୟନ୍ତ ଭାରତରେ ମଥା ଟେକି ରହିପାରିଛନ୍ତି ।

ନନ୍ଦ—କହିଲ ସୂର୍ଯ୍ୟମଣି, ଏସବୁ ଧର୍ମଗୁଡ଼ିକର ଶେଷ ପରିଣତି କ'ଣ ? ପାରିବ ତୁମେ ? ନା, ମୁଁ ଜାଣେ ତୁମେ ପାରିବ ନାହିଁ । ପ୍ରତ୍ୟେକ ଧର୍ମର ମୂଳ ଲକ୍ଷ୍ୟ ହେଉଛି ପରମାତ୍ମା ସହିତ ଆତ୍ମାର ମିଳନ । ଚରମ ଶାନ୍ତି, ମହାପ୍ରସ୍ଥାନ, ଯାହାକି, ଆଜି ସନାତନ ଧର୍ମର ମୂଳ ଲକ୍ଷ୍ୟରୁ ଉଦ୍ଭୂତ । ଭାରତରେ ସର୍ବ ଧର୍ମର ସମନ୍ୱୟ ଘଟିଛି । ବହୁଧର୍ମର ସୃଜନ ସ୍ଥଳୀ ଏ । କିନ୍ତୁ ଏ ପର୍ଯ୍ୟନ୍ତ କେତୋଟି ଧର୍ମ ପୂର୍ଣ୍ଣଭାବରେ ତିଷ୍ଠି ପାରିଛି ? ଗୋଟିଏ ବି ନୁହେଁ । କାରଣ, ପିତାର ବ୍ୟକ୍ତିତ୍ୱ ନିକଟରେ ପୁତ୍ରର ବ୍ୟକ୍ତିତ୍ୱ ଯେପରି ଚିରଦିନ ନମ୍ର ଆଜି ସନାତନ ଧର୍ମ ନିକଟରେ ସେହିପରି ସମସ୍ତ ଧର୍ମ ଧୀରେ ଧୀରେ ବିଲୟ ଭଜିଛନ୍ତି । ମୁକ୍ତି ଆମର ଏକାନ୍ତ ଲକ୍ଷ୍ୟ । ତେଣୁ ଯେ କୌଣସି ଧର୍ମର ପଥିକ ହେଲେ ମଧ୍ୟ ସେ ମୁକ୍ତି ହିଁ ଏକାନ୍ତ କାମ୍ୟ । ଧର୍ମ ପରିବର୍ତ୍ତନ ମୁକ୍ତିର କାରଣ ନୁହେଁ, ସାଧନାହିଁ ମୁକ୍ତିର କାରଣ । ମୁଁ ମୁକ୍ତିକାମୀ — ମୁଁ ସାଧକ ।

ସୂର୍ଯ୍ୟ – ତେବେ ···

ନନ୍ଦ—(କହିବାକୁ ନ ଦେଇ) ବ୍ରାହ୍ମଧର୍ମର ଭାଷା-ବଙ୍ଗଭାଷା । ମଧୁସୂଦନ, ରାଧାନାଥ, ଫକୀରମୋହନ ସବୁ ଏହି ଧର୍ମ ଆଡ଼କୁ ଆକୃଷ୍ଟ ହୋଇଛନ୍ତି । ଫଳରେ ସ୍ୱତଃପ୍ରବୃତ୍ତ ଭାବରେ ବଙ୍ଗଭାଷା ଓଡ଼ିଆ ଭାଷା ଉପରେ ପ୍ରଭୁତ୍ୱ ବିସ୍ତାର କରୁଛି । କେବଳ ଭାଷାର ପ୍ରଭାବ ନୁହେଁ ସୂର୍ଯ୍ୟମଣି, କୌଳିକତା, ଆଚାର, ବ୍ୟବହାର ସମସ୍ତ ଯେପରି ବଙ୍ଗଳାରୁ ଅନୁକରଣ ହୋଇଛି । କହିଲ ଦେଖି ଏ ଧର୍ମ ଓଡ଼ିଶାରେ ଯଦି ସ୍ଥାୟୀଭାବରେ ରହିଯାଏ; ତେବେ ଓଡ଼ିଆ ଭାଷା, ଓଡ଼ିଶା ପ୍ରଦେଶର ଅବସ୍ଥା କ'ଣ ହେବ ?

ସୂର୍ଯ୍ୟ—ବଙ୍ଗଭାଷୀମାନଙ୍କୁ କହିବାକୁ ସୁବିଧା ମିଳିବ ଯେ ଓଡ଼ିଆ ବଙ୍ଗଭାଷାର ଅନୁରୂପ ମାତ୍ର ।

—ଠିକ୍ କହୁଛ ତୁମେ । ଏଇଥିପାଇଁ ମୁଁ ବ୍ରାହ୍ମଧର୍ମର କବଳରୁ ଖସିଆସିଛି । ଓଡ଼ିଆର କ୍ଷୁଦ୍ର ପ୍ରାଣ ନେଇ ବଙ୍ଗଳାର ସର୍ବଗ୍ରାସୀ ମୁଖବିବରରୁ ଛୁଟି ମୋର ଭୂଇଁକୁ ମୁଁ ଫେରି ଆସି ପାରିଛି । ମୁଁ ଭାଗ୍ୟବାନ୍, ସୂର୍ଯ୍ୟମଣି, ମୁଁ ପ୍ରକୃତରେ ଭାଗ୍ୟବାନ୍ ।

(ସୂର୍ଯ୍ୟ ଅସ୍ତ ହୋଇ ଯାଉଥିଲେ, ଗୋଧୂଳିର ରକ୍ତରାଗ ସୁସ୍ପଷ୍ଟ )

—(ଚିନ୍ତିତହୋଇ) ଦେଖିଲେଣି ନନ୍ଦକିଶୋର ବାବୁ ସୂର୍ଯ୍ୟ ଯେ ବୁଡ଼ିଲେଣି ।

—(ସେହିପରି ତନ୍ମୟ ହୋଇ) ହଁ ଦେଖୁଛି ମୁଁ ଏଇ କଳନାଦିନୀ ବିରୂପା-କୂଳର ସନ୍ଧ୍ୟା । ଉଦୟଗିରିର ଷୋଳପୁଅମା ପାହାଡ଼ ତଳେ କନକ କିରଣ ବିଛାଇ ଦେଇ ସୂର୍ଯ୍ୟ ତେଉଁ ପଡ଼ୁଛନ୍ତି ମା କୋଳକୁ । ରତ୍ନଗିରିର ବୌଦ୍ଧବିହାରରୁ ଶୁଭୁଛି ମୋତେ ବୌଦ୍ଧମାନଙ୍କର ସନ୍ଧ୍ୟା ପ୍ରାର୍ଥନା ଆଉ ଆଲମଗିରିର ଶିଖରଦେଶରେ ମୁଁ ଶୁଣିପାରୁଛି ଆଲମଗିର, ଔରଙ୍ଗଜେବଙ୍କର "ଆଲ୍ଲା ହୋ ଆକ୍‌ବର"ର ଆବାହନ ଗୀତିକା ସବୁ ସ୍ୱପ୍ନ ସୂର୍ଯ୍ୟମଣି, ସବୁ ସ୍ୱପ୍ନ । ସହରର ଅନ୍ତରାଳରେ ପଲ୍ଲୀରେ ଏଇ ମଧୁର ସରଳ ନିର୍ମଳ ରୂପଚ୍ଛଟା.....

—(ହଠାତ୍ ପ୍ରବେଶ କରି କହି କହି) ଆଉ ସେହି ରୂପଚ୍ଛଟାକୁ ମୁଁ ରୂପ ଦେଇଛି ରୂପଗ୍ରାହୀ ଏହି କାଗଜ ଟିକକରେ । କବିର କଳ୍ପନା ସହି ଚିତ୍ରକାରର ରଚନା କ'ଣ ମେଳ ଖାଇବ କବି ! ଦେଖିଲ ଦେଖିଲ ଟିକେ ।

—(ତନ୍ଦ୍ରାମୁକ୍ତ ହୋଇ ଆନନ୍ଦରେ) ଆରେ, ବିମ୍ବାଧର ଯେ, ଆସ ଆସ ଠିକ୍ ବେଳରେ ଆସିଛ ଏକା, ନୁହେଁ ସୂର୍ଯ୍ୟମଣି !

—ନନ୍ଦକିଶୋର ବାବୁ, ମୋତେ ବିଦାୟ ଦିଅନ୍ତୁ ଏବେ । କବିଚିତ୍ରକାରଙ୍କ ମିଳନ ପୁଣି ଏ ବେଳରେ । ସମ୍ପୂର୍ଣ୍ଣ ଅରସିକଟା ମୁଁ । ଏଠି ରହିବାଟା ଭଲ ନୁହେଁ । (ସମସ୍ତେ ହସିଉଠିଲେ) (ନନ୍ଦକିଶୋର ଓ ସୂର୍ଯ୍ୟମଣି ନୂହେଁଯାକ ଚିତ୍ରଟିକୁ ନେଇ ଭଲଭାବରେ ଦେଖିଲେ)

—ବାଃ, ଖୁବ୍ ଚମତ୍କାର ହୋଇଛି ଏକା । ମୁଁ ତୁମକୁ କେତେଥର କହିଲଣି 'ଉତ୍କଳ-ସାହିତ୍ୟ'କୁ ପଠାଅ, ନିଶ୍ଚୟ ଛପା ହେବ । ତୁମେ ମୋ କଥା ଜମା ଶୁଣିଲ ନାହିଁ । ନାଇଁ, ଏଇଟା ମୋତେ ଦିଅ ମୁଁ ଏଥର ନେଇଯାଇ ଏଟାକୁ ନିଶ୍ଚୟ ଛପାଇଦେବି ।

—କଣ କହିଲେ ନନ୍ଦକିଶୋର ବାବୁ ! ଏଇଟାକୁ ନେଇ ଛପେଇବେ ? ମୋ ଟିକି ଗୋସିମା ପାଇଁ ଯାହାକୁ ଏତେ କଷ୍ଟ କରି ରୂପ ଦେଲି ତାକୁ ନେଇ ଆପଣ ଛାପାଖାନାରେ ଲୁହାରେ ଚାପେଇବେ ? କବି ପ୍ରାଣଟି ଆପଣଙ୍କର ।

ସୂର୍ଯ୍ୟ—ବମ୍ବାଧର, ତୁମର ସେଇ ଢଙ୍ଗଟା ଯିବ ନାହିଁ ଦେଖୁଛି ।

ନନ୍ଦ—(ଅଳ୍ପ ହସି) ଜାଣିଛ ସୂର୍ଯ୍ୟମଣି ! ମଣିଷର ଅବସର ସମୟରେ ସାମାନ୍ୟ ପ୍ରୟୋଜନ ଅତି ଆବଶ୍ୟକ ହୋଇପଡ଼େ । ବମ୍ବାଧର ମୋର ବାଲ୍ୟବନ୍ଧୁ, ମୋର ଅତି ଆପଣାର । ତାର ଏହି ବ୍ୟଙ୍ଗମିଶା ହାସ୍ୟ ମୋତେ ଖୁବ୍ ଭଲଲାଗେ । (ହସି) ଟିକ ଆଉ କ'ଣ ଏତିକରେ ସନ୍ତୁଷ୍ଟ ହୋଇଯିବେ ବମ୍ବାଧର !

ବମ୍ବାଧର—ଏ ନିଃସ୍ୱ କଳାକାର ଆଉ କ'ଣ ବା ଭେଟିଦେଇ ପାରିବ ? ଏ କଳା ମୋର ଜୀବନ । ଏଇ ମୋର ସର୍ବସ୍ୱ । ସେ ବୁଝି ନ ପାରିଲେ କବି-ଜେଜେ ମୋର ଅଛନ୍ତି ଯେ, ସବୁ ବୁଝାଇ ଦେବେନି, ତାଙ୍କର ଗରବ ନାହିଁଟି କଥା......(ସବୁ ହସିଉଠିଲେ)

ସୂର୍ଯ୍ୟ—ନନ୍ଦକିଶୋର ବାବୁ ! ଏବେ ଯିବାର ବନ୍ଦୋବସ୍ତ କରନ୍ତୁ, ଦୟାନିଧି ବାବୁ ତେଣେ ବ୍ୟସ୍ତ ହେବେ ହେବେଣି...

ବମ୍ବାଧର—ହଁ ହଁ ହବାର କଥା, କାଲେ ଶାନ୍ତିଲତ ଆସି କୋର କରି ଏଇବାଟେ କାନ୍ଧରେ ପଣତ ପକେଇ ଘୋଷାଡ଼ି ନେଇ ପଳେଇବେ !

ସୂର୍ଯ୍ୟ—(ଆଖିମାରି) ବମ୍ବାଧର ।

ବମ୍ବାଧର—ନାଇଁ—ନାଇଁ ଆଉ କହିବିନି । ପୁଣି ଯାଇ ଗୋସିମା ଆସିଲେ । ହଁ ଚାଲନ୍ତୁ, ଆଜ୍ଞା-ଚାଲନ୍ତୁ (ସମସ୍ତେ ଏକାବାଟରେ ଚାଲିଗଲେ)

ପରଦା

## ଦୃଶ୍ୟ ତିନି

[କୁସୁପୁର ଗ୍ରାମରେ ନନ୍ଦକିଶୋରଙ୍କର ଗୃହ – ସମସ୍ତ ଅପରାହ୍ଣ – ଗୃହଟିରୁ ଜଣାପଡ଼ୁଥାଏ ଯେପରି ଅତି ନିକଟରେ ଗୋଟିଏ ଉତ୍ସବ ଧୂମଧାମରେ ପାଳିତ ହୋଇଯାଇଛି। କାନ୍ଥରେ ବିବାହର ସଙ୍କେତ ପିଠଉର ଛିଟା-ଝୁଟି ।]

ହଳଦିଆ ଲୁଗାର କିୟଦଂଶ ଦେଖାଯାଏ । ଅଭ୍ୟନ୍ତରରେ ଝୁମୁରୁ ଝୁମୁରୁ ଶବ୍ଦ ବେଳେବେଳେ ଶୁଭୁଥାଏ । ଘରଟିରେ ଖଣ୍ଡିଏ ଖଟ । ଖଟମୁଣ୍ଡ ପାଖରେ ଝରକାଟିଏ । ଝରକା ସେପାଖରୁ ଘର ଅଗଣାର କିୟଦଂଶ ଦୃଷ୍ଟ ହୁଏ । ବେଳେ ବେଳେ ମଣିଷର ଯିବା ଆସିବାର ଦୃଶ୍ୟ ମଧ୍ୟ ଦେଖାଯାଏ । ଘରର କାନ୍ଥରେ ମଧୁସୂଦନ ରାଓ, ରାଧାନାଥ ରାୟଙ୍କର ଗୋଟିଏ ଗୋଟିଏ ବଡ଼ ବନ୍ଧେଇ ଫଟୋ । ଖଟ ପାଖକୁ ଲାଗି ଗୋଟିଏ ଆଲମାରି । ସେହି ଆଲମାରିରୁ ନନ୍ଦକିଶୋର ଯେପରି କ'ଣ ବ୍ୟସ୍ତ ହୋଇ ଖୋଜୁଥିଲେ । ଏତିକିବେଳେ ଝରକାରେ ଗୋଟିଏ ଚପଳମତି ଯୁବତୀର ମୁହଁ ଦେଖାଗଲା । ସେ ଚନ୍ଦ୍ରକଳା, ମୁହଁରେ ତାର କୌତୁକର ଉତ୍ସ । ଗୋଡ଼ ଚିପି ଚିପି ପ୍ରବେଶ କଲା ସେ ଘର ଭିତରେ । ପଛରୁ ନନ୍ଦକିଶୋରଙ୍କର ଆଖି ଦୁଇଟିକୁ ଚିପି ଧରିଲା ।]

ନନ୍ଦ—(ବ୍ୟତିବ୍ୟସ୍ତ ଭାବରେ) କିଏ ? ବିମ୍ବାଧର ? ତୁମେ ଏ ଅବେଳଟାରେ ଏମିତି କଣ ହେଉଛ ମ । ଦେଖୁଛି ଦିନକୁ ଦିନ ତୁମର ଏ ନୀତି ବଢ଼ି-ଚାଲିଛି । ଛାଡ଼ ତ, କହିଲ ପରା ତୁମର ସମସ୍ତ ଚାଲିକି ମୁଁ ଜାଣିସାରିଛି । ହୁଁ, ଖୋଲିଦିଅ ହାତ । ଓଃ କେତେ ଜୋର୍‌ରେ ଚାପି ଧରିଛ ମ' । ଆଃ ......ଛାଡ଼......

ଚନ୍ଦ୍ରକଳା—ଉଁ-ହୁଁଃ... (ଯଥାସମ୍ଭବ ସ୍ୱର ବଦଳାଇ)

ନନ୍ଦ—କ'ଣ ଛାଡ଼ିବ ନାହିଁ ?

ଚନ୍ଦ୍ର—କହିଲ ଦେଖି ମୁଁ କିଏ ?

ନନ୍ଦ (ଆଶ୍ଚର୍ଯ୍ୟରେ) ଆରେ, ତୁମେ ତେବେ ବିମ୍ବାଧର ନୁହଁ ? କିଏ ? କିଏ ତେବେ ତୁମେ ? (ହାତକୁ ଅଣ୍ଡାଳି ପକାଇଲେ)

ଚନ୍ଦ – (ଦ୍ରୁତହସକୁ ଚାପିରଖି) କବିମାନେ ପରା ଆଖି ବୁଜିଲେ ଜଗତଟାକୁ ଦେଖିପାରନ୍ତି । ଅତି ନିକଟରେ ଥାଇ ଆଖିବୁଜି ଧରିଥିବା ଲୋକକୁ ଚିହ୍ନିବାରେ କ'ଣ ଡେରି ହେଉଛି ମ'? (ସ୍ୱାଭାବିକ ସ୍ୱରରେ)

ନନ୍ଦ – ଓ, ଚିହ୍ନିଲି – ଚିହ୍ନିଲି । କୋକିଳ, ତୁମେ ଏଇ ଫାଜିଲମି ଆରମ୍ଭ କରିଛ ନୁହେଁ ?

ଚନ୍ଦ – ଉଁ ହୁଁଃ, ତେବେ ବି ହେଲ ନାହିଁ ।

ନନ୍ଦ – ମାନେ, ତୁମେ କୋକିଳ ନୁହଁ ?

ଚନ୍ଦ – ଉଁ-ହୁଁ ··· (ମୃଦୁ ହସି)

ନନ୍ଦ – କିଏ ? କିଏ ତେବେ ତୁମେ ? (ଆଶ୍ଚର୍ଯ୍ୟ ଓ ଅଧୀର)

ଚନ୍ଦ – କହିବି·····କହିବି···ମୁଁ···ମୁଁ···

ନନ୍ଦ—(ଅସ୍ଥିର ଭାବରେ) ହୁଁ, କୁହ··· ଓଃ, ମୋ ଆଖି ··

ଚନ୍ଦ – (ଅପେକ୍ଷାକୃତ ନିମ୍ନସ୍ୱରରେ) କବିର ମା-ନ-ସୀ···ହେଲ ? (ହାତ ଛାଡ଼ି ଦେଇ ବିଜୁଳି ବେଗରେ ଘୁଞ୍ଚିଗଲା । ନନ୍ଦକିଶୋର ହଠାତ୍ ଫେରି ଚାହିଁଲେ । ଦୂରରେ ଚନ୍ଦ୍ରକଳା ଏକ ଅପୂର୍ବ ଠାଣିରେ ଠିଆହୋଇ ମୃଦୁମୃଦୁ ହସୁଥିଲା । ନନ୍ଦକିଶୋର ସ୍ତମ୍ଭିତ ଭାବେ ଚାହିଁ ରହିଥିଲେ । ଯେପରି ସେ ଯାଦୁକରର ବଶୀକରଣ ମନ୍ତ୍ରରେ ମୋହିତ ହୋଇ ଯାଇଛନ୍ତି ! କିୟତ୍ ମୁହୂର୍ତ୍ତ ପରେ ସେ ଶ୍ରାନ୍ତ ଭାବରେ ଖଟ ଉପରେ ବସିପଡ଼ିଲେ, ଆଲୋକ ଉଜ୍ଜ୍ୱଳିତ ହେଲ । )

ନନ୍ଦ—ଚନ୍ଦ୍ରା ! କୌତୁକବ୍ୟଞ୍ଜକ ସ୍ୱର ) କଲେ । ତୋର ଯେ ଦେଖା ନ ଥିଲା ? ୧୫ ଦିନ ହେଲା ଗାଁକୁ ମୁଁ ଆସିଲିଣି । କୁଆଡ଼େ ଥିଲୁମ ତୁ ?

ଚନ୍ଦ୍ରା—(ଚନ୍ଦ୍ରକଳାର ଭାବ ହଠାତ୍ ପରିବର୍ତ୍ତନ, ସେ ନୀରବ)

ନନ୍ଦ—କଲେ ? ରାଗିଚୁ ନା କ'ଣମ ? କଥା କହୁନାହୁଁ ଯେ ?

ଚନ୍ଦ୍ରା— ମାନସୀକୁ ଭୁଲିଯାଇଛ ବୋଧହୁଏ ? (ବକ୍ରୋକ୍ତି)

ନନ୍ଦ— ଚନ୍ଦ୍ରା ! (ବିସ୍ମୟ)

ଚନ୍ଦ୍ରା – ହୁଁ ! (ଗମ୍ଭୀର-ଅଧୋବଦନ) କିନ୍ତୁ ମାନସୀର ମନ ତଳେ ତୁମେ ଯେଉଁ ଗାଢ଼ ରେଖା ସେଦିନ ଆଙ୍କିଥିଲ, ତାହା କେବେ ଲିଭିବ ନାହିଁ କବି ! ତୁମର ଆଜି ଏ ସମ୍ବୋଧନ······"ବସନ୍ତ କୋକିଳ"ର କବିତା କାହାପାଇଁ କହିପାରିବ ମୋତେ ?

ନନ୍ଦ—ଚନ୍ଦ୍ରା···ତୁ ଭୁଲ ବୁଝିଲୁ ମୋତେ ?

ଚନ୍ଦ୍ରା—ଠିକ ବରଗଛରେ ସେଇ ନରମ ଝଙ୍କାଳିଆ ଗଛ, ଆକାଶରେ ଅଶ୍ୱିଣର ବାଦଲ, ଆଉ ତା'ର ତଳେ ଗୋଟିଏ କବି ଆଉ ତା'ର ମାନସୀ ··· ଦିଗହଜା କଥାର ସୁଅ ତଳେ ସେଦିନ ଦୁହେଁ ଉଡ଼ି ଯାଇଥିଲେ । ବେଳ ବୁଡ଼ିଯାଇଥିଲା । ପଶ୍ଚିମ ଆକାଶରେ ଫଗୁଖେଳ ଦେଖି ସେଦିନ ମାନସୀକୁ କବିଟି କହିଥିଲା····

ନନ୍ଦ—ଆଃ—ଚନ୍ଦ୍ରା, (ବିଚଳିତ ହୋଇ)

ଚନ୍ଦ୍ରା ତଟରେ ବସି ବିରୂପାର ସେଦିନର ସେ କଳକଳ ରାଗିଣୀ ସହିତ ମାନସୀଟି ଗୁଣୁ ଗୁଣୁ ସଙ୍ଗୀତରେ ମୂର୍ଚ୍ଛନା ତୋଳିଥିଲା । ଉଦୟଗିରି ଚୂଳରେ ବସି ରକ୍ତମୁଖା ସୂର୍ଯ୍ୟ ହସୁଥିଲେ, ବିରୂପା ହସୁଥିଲା—ଆଉ ହସୁଥିଲେ କବିଟି ମାନସୀକୁ ଚାହିଁ । ହାତରେ ଲେଖନୀ ଆଉ ଲିପିକା । ହୃଦୟରେ ଆବେଗ ଆଉ କବିତାର ଉଚ୍ଛ୍ୱସିତ ଭାବରେ ବିଦଗ୍ଧ ହୋଇ କବିଟି ସେଦିନ କହିଥିଲା, "ମାନସୀ···

ନନ୍ଦ—(ଉତ୍ତେଜିତ ଭାବରେ ଖଟରୁ ଉଠିପଡ଼ି) ବନ୍ଦକର । ବନ୍ଦକର ଚନ୍ଦ୍ରା ! ଅତୀତର ପୁନରାବୃତ୍ତିରେ ବର୍ତ୍ତମାନକୁ ମୋର ଦଗ୍ଧ କରନା

ଚନ୍ଦ୍ରା (ଆବିଷ୍ଟ ହୋଇ) ଦିନେ ମାନସୀଟି କବିର କବିତା ଚୋରି କରି ପଢ଼ିଲା । ଗୋପନରେ ଅତି ଗୋପନରେ, ମାନସୀର ସୁକଣ୍ଠରେ କବିର କବିତା କେତେ ରସମୟୀ, କେତେ ଛନ୍ଦମୟୀ ହୋଇ ନଥିବ ? ସତେ ଯେପରି ସେ ଆତ୍ମହରା ହୋଇଯିବ; କିନ୍ତୁ ପରକ୍ଷଣରେ ମାନସୀଟିର ହୃଦୟ ଥରି ଉଠିଲା ବୁକୁ ଫଟାଇ । ତାର କୋହ ଆସିଲା ···ଏଯେ ତାର କବିର କବିତା ନୁହେଁ, ସେ କବିତାର ନାୟିକା । କବିର ପ୍ରଣୟିନୀ—କାୟା । ···· କହିପାରିବ, କହିପାରିବ ତୁମେ ମାନସୀର ସେଦିନର ଅବସ୍ଥା ··· (ସେ ଯେପରି କାନ୍ଦି ଉଠିଲା । ନନ୍ଦକିଶୋର ଆବେଗରେ ଉଠି ଆସିଲେ, ମଞ୍ଚର ଆଲୋକର ଉଜ୍ଜ୍ୱଳତା କମିଗଲା ଧୀରେ ଧୀରେ । ନନ୍ଦକିଶୋର ଚନ୍ଦ୍ରାର ଦୁଇ ହାତକୁ ଆବେଗରେ ଚାପି ଧରିଲେ ଛାତି ଉପରେ । ଆଲୋକ କମି କମି ଅନ୍ଧାର ଓ ଆଲୋକର ସୀମା ରେଖାକୁ ଚାଲି ଆସିଲା । କେମିତି ଏକ ଆଲୋକଛାୟାର ସୃଷ୍ଟି, ଅର୍କେଷ୍ଟ୍ରାର ମୃଦୁ ଗୁଞ୍ଜନ )

ନନ୍ଦ—ଚନ୍ଦ୍ରା—ଚନ୍ଦ୍ରକଳା ମାନସୀ ମୋର !
ଜୀବନର ଦ୍ୱିତୀୟ ସୋପାନର ପ୍ରାରମ୍ଭରେ ମୁଁ ତୋ'ର ରୂପରେ ମୁଗ୍ଧ ହୋଇଥିଲି । ତୋ'ର ରୂପ ଉତ୍ସର ପ୍ରେରଣା ଦିନେ ମୋତେ ଦେଇଥିଲା କବିତାର ସନ୍ଧାନ । ସ୍ୱର୍ଣ୍ଣ ଯୁଗର ସନ୍ଧ୍ୟା ନଇଁ ଆସିଥିଲା କବି ଓ ମାନସୀ ଦୁହିଁଙ୍କ ଉପରେ । ଖଣ୍ଡିତ ଚନ୍ଦ୍ରମା ହସିଥିଲା ପବନ

ବହୁଥିଲା ଧୀରେ ଧୀରେ, ବରୂପା ତୋଳିଥିଲା କଳ କଳ ରାଗିଣୀ, ମାନସୀର ହୃଦୟର ସ୍ପନ୍ଦନ କବିର ହୃଦୟରେ ଆଣିଥିଲା ଶିହରଣ । ଅଧରର ହସ ତା'ର ଦେଇଥିଲା ସୃଜନୀ-ଶକ୍ତି । କବି ଲେଖିଥିଲା କବିତା । କିନ୍ତୁ ସେ କବିତା କ'ଣ ମାନସୀର ବ୍ୟାକୁଳତାରେ ବିଳୟ ଭିଜାଥାନ୍ତା ଚନ୍ଦା ! ସେଇଥିରେ କ'ଣ ମାନସୀ ପ୍ରକୃତରେ ସୁଖୀ ହୋଇ ପାରିଥାନ୍ତା ? )

ଚନ୍ଦା—(ନୀରବ)

ନନ୍ଦ—କବିର ହୃଦୟରେ ଚିରନ୍ତନ ସ୍ଥାନ ପାଇବା ପାଇଁ ମାନସୀଟିର ମନଗହନ ତଳେ ଯେଉଁ ଆଶାର ଅଙ୍କୁର ଜାଗି ଉଠିଥିଲା, ସେହି ଅଙ୍କୁରଟିକୁ ନଷ୍ଟ କରିଦେଲା ନିୟତି । ସମାଜର ବନ୍ଧନ-ନିୟମକୁ ଉଲ୍ଲଂଘନ କରି କବି ମାନସୀକୁ ନିଜର କରିପାରିଲା ନାହିଁ । କିନ୍ତୁ, ତଥାପି ...... ତଥାପି କ'ଣ ସେ ତା'ର ମାନସୀକୁ ଭୁଲିଯିବ ? ଚନ୍ଦା .... (ଅଧରୋଷ୍ଠ ତୋଳି ଧରିଲେ) ତୁ ମୋର ଚିରନ୍ତନ ମାନସୀ ହୋଇ ରହିଥିବୁ ଚନ୍ଦା । ମାନସୀର ଗୌରବ ନଷ୍ଟକରି ତୋ ସହିତ ଶାରୀରିକ ସମ୍ବନ୍ଧ ସ୍ଥାପନ କରିବାକୁ କବି ମନ ମୋର ସ୍ୱୀକାର କଲା ନାହିଁ ଚନ୍ଦା ! ତୁ ମାନସୀ, ମୁଁ କବି, ତୋପାଇଁ ମୋର କବିତାର ସୃଜନ । ତୋତେ କ'ଣ ମୁଁ ଭୁଲି ପାରିବି କେବେ ? ତୋ'ର ସେହି ପ୍ରଥମ ଯୌବନର ସ୍ପର୍ଶ ଆଉ ପ୍ରେରଣାକୁ ମୁଁ ଦେବତାର ଆଶିଷ ଭାବରେ ରଖିଥିବି ଚନ୍ଦା ! ଜଗତ ତୋତେ କବିପତ୍ନୀର ସମ୍ମାନ ଦେବ ନାହିଁ ସତ କିନ୍ତୁ ତା'ର ଅନ୍ତର୍ଦୃଷ୍ଟି ଦ୍ୱାରା ଭାବର ସାଗରକୁ ମନ୍ଥନ କଲେ ସେ ଦେଖିପାରିବ ନନ୍ଦକିଶୋରର ହୃଦୟରେ ଚନ୍ଦ୍ରକଳାର ସ୍ଥାନ କେଉଁଠି ? ହୃଦୟ ନିକୁଞ୍ଜର ଯେଉଁ ନିଭୃତ କୋଣରେ କୋକିଳର ପ୍ରବେଶ ନିଷେଧ ସେହି କୁଞ୍ଜରେ କେବଳ ଚନ୍ଦ୍ରକଳାର ଗୁମ୍ଫା ଦୋଳି ଖେଳେ । ସେ ଗୁମ୍ଫା ଭାଷାର ଚନ୍ଦା, ସେ ଗୁମ୍ଫା ମୋର ଭାବର ଭଣ୍ଡାର, ମୋର କବିତାର ସ୍ଫୁରଣ ।

ଚନ୍ଦା—କବି ... (ଏକ ପ୍ରକାର ଆତ୍ମଗତ ଭାବରେ ସତେ ଯେମିତି ମୁଗ୍‌ଧା-ସେ ଯେମିତି ସବୁକଥା ବିଶ୍ୱାସ କରିପାରୁଛି )"

ନନ୍ଦ ଚନ୍ଦା ଚନ୍ଦ୍ରକଳା—ମାନସୀ ମୋର !

(ହଠାତ୍ ଆଲୋକ ଉଜ୍ଜ୍ୱଳ ଉଠିଲା । ଚନ୍ଦ୍ରକଳା ଓ ନନ୍ଦକିଶୋର ବିଚ୍ଛିନ୍ନ ହୋଇଗଲେ । ଠିକ୍ ପୂର୍ବପରି ଭାବ । ଚନ୍ଦ୍ରକଳା କଳ-ହାସିନୀ, ତାର ଜଡତା କଟିଯାଇଛି । ସେ ପୂର୍ବ ଭାବ ଫେରି ପାଇଛି, ଅଧରରେ ତାର ଦୁଷ୍ଟାମି-ହସ, ନନ୍ଦକିଶୋର ଖଟ ଉପରେ ବସି ଯେପରି କିଛି ଭାବିବାର ଚେଷ୍ଟା କରୁଛନ୍ତି । (ଛଳନା ? ) ଧୀରେ ଧୀରେ ପ୍ରବେଶ କଲେ କୋକିଳ

ଚନ୍ଦ୍ରକଳାର ସମବୟସୀ । ଅବଗୁଣ୍ଠନ ଥିଲେ ମଧ୍ୟ ମୁଖମଣ୍ଡଳ ସ୍ପଷ୍ଟଭାବେ ପରିଦୃଷ୍ଟ ହୁଏ । କୋକିଳଙ୍କୁ ଦେଖି ନନ୍ଦକିଶୋର ହଠାତ୍ ଭାବ ପରିବର୍ତ୍ତନ କଲେ । ସେ ଉଠିପଡ଼ି କୃତ୍ରିମ ବିରକ୍ତି ବ୍ୟଞ୍ଜକ ସ୍ୱରରେ ପଚାରିଲେ) ।

ନନ୍ଦ—କୋକିଳ !

କୋକିଳ—(ଚାହିଁଲେ, କିନ୍ତୁ ଦୃଷ୍ଟିର ମିଳନ ସଙ୍ଗେ ସଙ୍ଗେ ସେ ଚକ୍ଷୁ ଫେରାଇଲେ । ପଥରେ ଚନ୍ଦ୍ରକଳା ସହିତ ପୁଣି ସେ ଦୃଷ୍ଟିର ମିଳନ ହେଲା । )

ନନ୍ଦ—ମୋର କବିତା ଖାତାଟିକୁ କେଉଁଠି ରଖିଛ ?

କୋକିଳ—ନ ଦେଖି ନ ଶୁଣି ଏପରି ଅଭିଯୋଗଟା କ'ଣ ଯଥାର୍ଥ କଲା !

(ଚନ୍ଦ୍ରକଳାକୁ ଚାହିଁ ସଲଜ୍ଜ ହସ)

ନନ୍ଦ—କଥାଟା ବୋଧହୁଏ ଚନ୍ଦ୍ରା ପଚାରିଥିଲି ? ନୁହେଁ ? ସେହି ପୁରୁଣା ଢଙ୍ଗଟା ତୁମେ ଯେତେ କହିଲେ କିଛି ହେବ ନାହିଁ । ଦେଖୁଛି କୋକିଳ । କଥାଟା ମୁଁ ପଚାରିଲି ତୁମକୁ । ବେଶ୍ ସାଙ୍ଗେ ସାଙ୍ଗେ ତୃତୀୟ ପୁରୁଷକୁ ତୁମେ ଉତ୍ତରଟା ଦେଇ ଦେଲ ।

କୋକିଳ—ସ୍ତ୍ରୀକୁ ପୁରୁଷ ବୋଲି କହିବା ବୋଧହୁଏ କବିଙ୍କର ଗୋଟାଏ ଲକ୍ଷଣ ।

ନନ୍ଦ—(କ୍ଷୁବ୍ଧ ହୋଇ) କୋକିଳ !

ଚନ୍ଦ—ରାଗିଲ ନା କ'ଣ ମ' ନନ୍ଦ ଅଜା ! ଖାତାଟି ଯଦିବା ନେଇଛନ୍ତି ଆଉ ଧୋଇ ପିଇ ଦେଇ ନାହାନ୍ତି ତ ? କହିଦେଉନା ଆଇ, ଏତେ ଲାଜ କାହାକୁ କରୁଛ ମ' ? ସଫା ତ କହିଦେବ କବିତା ଖାତାଟାକୁ ମୁଁ ଆଉ କଳା ନେଇ ପଢୁଥିଲୁ ।

ନନ୍ଦ—ହୁଁ, ତୋର ସବୁ ଫିକର । ତାହେଲେ ଚନ୍ଦ୍ରା । ଆସିବାର ଦିନକ ଭିତରେ ଏମିତି ଶିଷ୍ୟା କରିନେଲୁଣି ନୁହେଁ ? ମୁଁ ପଚାରୁଛି ମୋର ବିନାନୁମତିରେ ଏ ଘରେ ପଶିବାକୁ କିଏ ଅନୁମତି ଦେଇଛି ?

କୋକିଳ—ପଚାରିଲି କଳା, ମୋ ବିନାନୁମତିରେ ମୋ ନାମରେ କବିତା ଲେଖିବାକୁ କିଏ ତାଙ୍କୁ ଅନୁମତି ଦେଇଛି ?

ନନ୍ଦ—ତୁମ ନାମରେ କବିତା ?

କୋକିଳ—ହୁଁ ଏଇ "ବସନ୍ତ କୋକିଳ ।"

ନନ୍ଦ—ତୁମ ଛଡ଼ା ଦୁନିଆରେ ବୋଧହୁଏ ଆଉ କେହି କୋକିଳ ନାହାନ୍ତି ?

କୋକିଳ—ସତେ ? କହିଲ ଦେଖି ସେହି କୋକିଳଟି କିଏ ? ଯାହାପାଇଁ କବି ଏତେ ବ୍ୟଥିତ ହୋଇପଡ଼ିଛନ୍ତି… …ପଢ଼ିଲ ପଢ଼ିଲ କଳା ସେହି କବିତାଟି (ଚକ୍ଷୁରେ କୌତୁକର ହସ, ଲୁଗାତଳୁ ଲୁଚାଇଥିବା ଖାତାଟି କାଢ଼ି ଚନ୍ଦ୍ରକଳାକୁ ଦେଲେ, ସେ ପଢ଼ିଲା !—)

ଯାଅରେ କବିତା ମୋର ପ୍ରିୟତମା ଘରେ
ଧରନ୍ତୁ ଚମ୍ପକାଙ୍ଗୁଳି ଯୁତ ଗୃରୁ କରେ
ପଙ୍କଜ-ପଳାଶ-ନେତ୍ର ପଡ଼ୁ ତୋ ଉପର
ଚନ୍ଦନ ସୁରଭି ଶ୍ୱାସେ ହୁଅ ପବିତର ।
ଘନକୃଷ୍ଣ ବେଣୀ ତାଙ୍କ ପଡ଼ୁଥିବ ଲୋଟି
ତା ପାଖେ ବଗ୍ରଜ ପାଅ ଗୌରବ କୋଟି ।

ନନ୍ଦ—ହୁଁ, ବୁଝୁଁଛି । ତୁମେ ତା' ହେଲେ ଗୋଟାଏ ଷଡ଼ଯନ୍ତ୍ର ଆରମ୍ଭ କରିଦେଇଛ, ନୁହେଁ ?

କୋକିଳ—ଆରେ, ବନ୍ଦ କରିଦେଲ କି ? (କଳାପ୍ରତି) 'କେମାଦେଈ' କବିତାର ସେଇ ଅଂଶଟି ପଢ଼ିଲ—

ଚନ୍ଦ୍ର—(ପଢ଼ିଲା) ରୂପର ତୁରୁଷା ସିନା ହୁଏ ଯୁବାକାଳେ,
ଯୁବାକାଳ ଗଲେ ରୂପ ନ ଫେରଇ ଡାଳେ ।
ଗ୍ରାମ-ଶେଷ-ମୃଣ୍ଡ-ଘର ଅଟଇ ସ୍ୱେରକୁ,
ବୁଢ଼ାକାଳ ବନ୍ଧୁ ପର ଅଟଇ ପରକୁ ।
ନବୀନ ବୟସ ସିନା ପୀରତି ସମସ୍ତ,
ଘର ନ ଧରଣ ମନ ହୁଏଟି ଅଥୟ ।

କୋକିଳ—ପଗୃରିଲ କଳା, କାହା ପାଇଁ କବିଙ୍କର ମନ ଘର ଧରିପାରୁ ନାହିଁ ?
(ଆଖିରେ ଦୁଷ୍ଟାମି)

ଚନ୍ଦ୍ର—କି, ଉତ୍ତର ଦେଉନ ଯେ ନନ୍ଦ ଅଜା । ଆଉ କଥାରେ ଡରିଗଲ ନା କ'ଣ ମ ?

ନନ୍ଦ—କହୁଛି ପରା ଖିତମତ ଷଡ଼ଯନ୍ତ୍ର । ତୁମ ଦାଉରୁ ଖସିଲେ ଯାଇ ମୋର ରକ୍ଷା । ନହେଲେ ଯାହା ଦେଖୁଛି ତୁମେ ମତେ କିଛି କରେଇ ଦେବ ନାହିଁ । ବୁଝିଲୁ ଚନ୍ଦ୍ରା, ଏମିତ ଶ୍ୱଶୁର ଘରଟିଏ ଠିକ୍ କରିବ ଯେ ବାପ ଘର ମାଟି ବି ମାଡ଼ିବାକୁ ଆଉ ଦେବେ ନି । ତେବେ ଯାଇ ମୋ କଥା ମନେପଡ଼ିବ !

[illegible]—ମୋ ମାଲେ । ଏଇବେଳୁ ତ ଏମିତି ଧମକ୍ । ଆହୁରି ତ ଦିନକାଳ ଅଛି । ମୁଁ ଯାଉଛି ଆଈ, ତୁମେ ତୁମର ଗପସପ ହୁଅ । ମୁଁ କାହିଁକି ତୁମକୁ ଶିଖାଇବାକୁ ଯିବି ନା, ଏମିତି ଶଶୁର ଘରଟିଏ ପାଇବ ? କବିତା ବହିଟା ତୁମେ ଚୋରି କଲ । ହେଲେ ସେଟାକୁ ନେଇ ମୁଁ ଦି' ଧାଡ଼ି ପଢ଼ିଦେଲି । ସେଥିରେ କ'ଣ ନା··· (ନନ୍ଦକିଶୋରଙ୍କ ପ୍ରତି ତୀବ୍ର କଟାକ୍ଷ) ମୁଁ ଯାଉଛି ଲୋ ମା ! ଦି'ପରଣୀ ବସି କବିତା ଚର୍ଚ୍ଚା କରୁଥାଅ ।

( ଡମ ଡମ ହୋଇ ଚାଲିଗଲା )

[illegible]ଳ—ବିଚାରି ଝିଅଟିଏ ସତେ !

[illegible]—(ଅନ୍ୟମନସ୍କ ଭାବେ) ହୁଁ !

ପରଦା

## ଦୃଶ୍ୟ ଚୃତ୍ର

[ କଟକ । ଉତ୍କଳ ପ୍ରିଣ୍ଟିଂ କମ୍ପାନୀର ଅଫିସ । ଗୋଟିଏ ଟେବୁଲ ଚାରିପାଖେ ବସିଥିଲେ ଗୋପାଳ ପ୍ରହରାଜ, କାମପାଳ ମିଶ୍ର, ଅଭିରାମ ଭଞ୍ଜ । ଆହୁରି ଦୁଇ ତିନୋଟି ଚେୟାର ଖାଲି ପଡ଼ିଥିଲା । ସିନ୍ ଉଠିବା ପରେ ଦେଖାଗଲା ତିନିଜଣଯାକ ଗଭୀର ଆଲୋଚନାରେ ବ୍ୟସ୍ତ ।]

କାମପାଳ—ଦେଖନ୍ତୁ ଗୋପାଳବାବୁ, ଆପଣଙ୍କର ବକ୍ତୃତା ପ୍ରକୃତରେ ପକ୍ଷପାତ ଦୁଷ୍ଟ । ମୋର 'ସୀତା ବିବାହ'କୁ ଖରାପ ବୋଲି କହି ପାରନ୍ତି; କିନ୍ତୁ ତା ବୋଲି ମାଇକେଲ ମଧୁସୂଦନଙ୍କର 'ମେଘନାଦ ବଧ'ର ଅନୁକରଣ ବୋଲି କହିବାଟା ବାସ୍ତବିକ ମୋ ପକ୍ଷରେ ଅତ୍ୟନ୍ତ ଅସହ୍ୟ ।

ଗୋପାଳ—ଦେଖ ହେ ଭଞ୍ଜେ, (ହସି) କାମପାଳ ବାବୁ କେମିତି ଖାଲି ମୋରି ଉପରେ ଦୋଷ ଲଦିବାରେ ଲାଗିଛନ୍ତି । 'ସୀତା ବିବାହ' ନାଟକ ଲେଖିଲେ ଆପଣ । ତାକୁ ସମାଲୋଚନା କଲେ ନନ୍ଦକିଶୋର ବାବୁ । ମଝିରେ ଆପଣ ମୋ ଉପରେ କାହିଁକି ଦୋଷଟା ଲଦୁଛନ୍ତି କହିଲେ ?

କାମପାଳ – ନନ୍ଦକିଶୋର ବାବୁଙ୍କ ନିର୍ଦ୍ଦେଶକୁ ଆପଣ ତ ଅକ୍ଷରେ ଅକ୍ଷରେ ସତ ବୋଲି କହୁଛନ୍ତି ।

ଗୋପାଳ—କେବଳ ମୁଁ ନୁହେଁ । ଆଚ୍ଛା କହିଲେ କାମପାଳ ବାବୁ, ଗୋଟିଏ ଜଳଆଣି ଆପଣ ଯଦି ତାକୁ ପ୍ରମାଣ କରେଇ ଦେବେ ଯେ ସେଇଟା ଗୋଟାଏ ଆତ, ତାକୁ କ'ଣ ଆମେ ଅସ୍ୱୀକାର କରିବୁଁ ?

କାମପାଳ—(ସାମାନ୍ୟ କ୍ରୋଧ) ତା' ହେଲେ ଆପଣ ପ୍ରମାଣ କରିଦେବେ ଯେ ମୁଁ ରାମଚନ୍ଦ୍ରଙ୍କୁ ଛୋଟ କରି ଦେଇଛି ?

ଗୋପାଳ—ନିଶ୍ଚୟ ! ପରଶୁରାମଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଯାଇ ଆପଣ ପରୋକ୍ଷରେ ରାମଚନ୍ଦ୍ରଙ୍କୁ ଛୋଟ କରିଛନ୍ତି ।

ଅଭିରାମ—ଆଉ ମୁଁ ଜୋର ଦେଇ କହିବି ଏଇ ରୀତିଟା ଆପଣ ଅନୁକରଣ କରିଛନ୍ତି ବଙ୍ଗଳା 'ମେଘନାଦବଧ''ରୁ ଯେଉଁଠି ମାଇକେଲ ମଧୁସୂଦନ ଇନ୍ଦ୍ରଜିତର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଯାଇ ଲକ୍ଷ୍ମଣଙ୍କୁ ମଧ୍ୟ କାପୁରୁଷ ଭାବରେ ଚିତ୍ରଣ କରିବାକୁ ଭୁଲି ନାହାନ୍ତି ।

ଗୋପାଳ—ଶୁଣନ୍ତୁ, ଶୁଣନ୍ତୁ କାମପାଳ ବାବୁ, ଆପଣ କହୁଥିଲେ ପରା ମୁଁ କେବଳ ନନ୍ଦକିଶୋର ବାବୁଙ୍କ ମତକୁ ସମର୍ଥ କରୁଛି । ଏବେ ଶୁଣିଲେ ତ ଭଞ୍ଜଙ୍କ କଥା ?

ଅଭିରାମ—ଭାବନ୍ତୁ ନାହିଁ କାମପାଳ ବାବୁ ! ଆପଣ ଯେତେବେଳେ ନାଟକଟିର ସମାଲୋଚନା ଦାୟିତ୍ୱ ଆମ ଉପରେ ନ୍ୟସ୍ତ କରିଛନ୍ତି ଆମେ ତ ଗୁଣ ଦୋଷ ଉଭୟ ଆଲୋଚନା କରିବୁଁ । ଡକ୍ଟର ଜନ୍‌ସନଙ୍କ "Lives of the Poets" ତ ପଢ଼ିଛନ୍ତି । ଜନ୍‌ସନ୍ ଡ୍ରାଇଡେନଙ୍କୁ କେତେ ଉଚ୍ଚକୁ ଉଠାଇ ପୁଣି କେତେ ତଳେ ପକେଇ ଦେଇଛନ୍ତି କହିଲେ । ସମାଲୋଚକ ଯଦି କେବଳ ଗୁଣଗୁଡ଼ିକ ବାହାର କରି ଦୋଷଗୁଡ଼ିକ ଛାଡ଼ି ଦିଏ, କିମ୍ବା ଦୋଷଗୁଡ଼ିକ ନେଇ ବାହାର କରି ଗୁଣଗୁଡ଼ିକ ଛାଡ଼ିଦିଏ ତେବେ ତା'ର ସମାଲୋଚନା ଅପୂର୍ଣ୍ଣ ରହିଲା । "ସୀତା ବିବାହ" ନାଟକକୁ ଯେ ଆମେ ଏକାବେଳକେ Condemn କରୁଛୁ ତା' ତ ନୁହେଁ । ରାମଙ୍କର ହରଧନୁ ଭଙ୍ଗ ଦୃଶ୍ୟଟି ତ ଖୁବ୍ ଜୀବନ୍ତ ହୋଇଛି । ନୁହେଁ ପ୍ରହରାଜେ !

ଗୋପାଳ—କାମପାଳ ବାବୁଙ୍କ ପ୍ରଥମ ରଚନା ହିସାବରେ ମୁଁ ତ ଦୋଷଗୁଡ଼ିକୁ ମାରାତ୍ମକ ବୋଲି କହୁନାହିଁ କିନ୍ତୁ ସେ ଯେ ଏମିତି ବ୍ୟସ୍ତ କାହିଁକି ହୋଇପଡ଼ୁଛନ୍ତି ମୁଁ ତାହା ବୁଝିପାରୁ ନାହିଁ । ଦେଖନ୍ତୁ କାମପାଳ ବାବୁ, ନନ୍ଦକିଶୋର ବାବୁଙ୍କ ସହିତ ଯେ ଆମେ ଏକମତ ସେଥିରେ ଆପଣ ଦୁଃଖବୋଧ କରିବା ଦ୍ୱାରା ଆପଣଙ୍କର ଦୁର୍ବଳତା ପ୍ରକାଶ କରୁଛନ୍ତି । ଆପଣଙ୍କର ରଚନାକୁ ଆପଣ ଯଥାସାଧ୍ୟ ପ୍ରମାଣ ଦ୍ୱାରା ନିର୍ଭୁଲ ସାବ୍ୟସ୍ତ କରିପାରନ୍ତି କିନ୍ତୁ ତା ବୋଲି ଆମକୁ ତ ବାଧ୍ୟ କରିପାରିବେ ନାହିଁ ?

କାମପାଳ—ନା-ନା ଏଥିରେ ବାଧ୍ୟ କରିବାର ବା କ'ଣ ରହିଲା ? ସାଙ୍ଗ ସାଥି ହିସାବରେ ମୁଁ ନାଟକର ସମାଲୋଚନା ଭାର ଆପଣଙ୍କ ଉପରେ ଦେଇଥିଲି । ନନ୍ଦ କିଶୋର ବାବୁଙ୍କର 'ପଲ୍ଲୀଚିତ୍ର' ମଧ୍ୟ ମୋର ସମସାମୟିକ ଲେଖା ହିସାବରେ ଆମ ସଂସଦ ଦ୍ୱାରା ଆଲୋଚିତ ହୋଇଛି କିନ୍ତୁ 'ପଲ୍ଲୀଚିତ୍ର'କୁ ଉଚ୍ଛ୍ୱସିତ ପ୍ରଶଂସା କରି ମୋର "ସୀତା ବିବାହ" କୁ ଯେ ଆପଣମାନେ ଏପରିଭାବେ Condemn କରୁଛନ୍ତି ଏଥିରେ କିଣ ମୁଁ ଦୁଃଖିତ ହେବି ନାହିଁ ।

ଗୋପାଳ – ଆଉ ହିବନି କାମପାଳ ବାବୁ, 'ପଲ୍ଲୀଚିତ୍ର' ସହିତ 'ସୀତା ବିବାହ'କୁ ଯେ ଆପଣ କେଉଁ ବିଷୟରେ ତୁଳନା କରୁଛନ୍ତି, ମୁଁ କିଛି ବୁଝିପାରୁ ନାହିଁ । 'ସୀତା ବିବାହ' ନାଟକ ଆଉ 'ପଲ୍ଲୀଚିତ୍ର'ର ପ୍ରକାଶନ କାଳ ଏକ

ହେଲେ ବି ଦୁହିଁଙ୍କର ଆଭିମୁଖ୍ୟ, ଏବଂ ଶୈଳୀ ସଂପୂର୍ଣ୍ଣ ଭିନ୍ନ । ଉତ୍କଳର ପଲ୍ଲୀ ଜୀବନ ସମ୍ବନ୍ଧରେ ଯେଉଁ ଇଂରାଜୀ ପ୍ରବନ୍ଧ ଲେଖି ନନ୍ଦକିଶୋର ବାବୁ ଭାଲଚେର ପଦକ ପାଇଛନ୍ତି 'ପଲ୍ଲୀଚିତ୍ର' ତା'ର କବିତା ରୂପାନ୍ତର । ଉତ୍କଳର ପଲ୍ଲୀ ବୈଭବକୁ ଜଗତ ଆଗରେ ଉପସ୍ଥାପିତ କରିବାହିଁ ହେଲା ପଲ୍ଲୀଚିତ୍ରର ଉଦ୍ଦେଶ୍ୟ । କିନ୍ତୁ ପୌରାଣିକ କଥାକୁ କେନ୍ଦ୍ରକରି ଆଦର୍ଶମାନବ ରାମଚନ୍ଦ୍ରଙ୍କର ଚରିତ୍ର ଜନ ସମାଜରେ ଉପସ୍ଥାପିତ କରିବା ହେଲା 'ସୀତା ବିବାହ' ନାଟକର ଲକ୍ଷ୍ୟ । 'ପଲ୍ଲୀଚିତ୍ର'ର କବି ନିଜ ପ୍ରତିଭା ବଳରେ ସର୍ବଜନପ୍ରିୟ ହୋଇ ପାରିଛନ୍ତି । କିନ୍ତୁ 'ସୀତା ବିବାହ' ନାଟକର ନାୟକ ରାମଚନ୍ଦ୍ରଙ୍କୁ ଆପଣ ଯେଉଁ ସ୍ତରରେ ଆଣି ଥୋଇଛନ୍ତି ସମାଜକୁ ତାହା କି ଶିକ୍ଷା ଦେଇପାରିବ କହିଲେ କାମପାଳ ବାବୁ !

କାମପାଳ—(ରାଗିଯାଇ) ତେବେ ଆପଣଙ୍କ ମତରେ 'ପଲ୍ଲୀଚିତ୍ର' ଓଡ଼ିଆ କାବ୍ୟ ସାହିତ୍ୟରେ ସର୍ବଜନପ୍ରିୟ ହୋଇ ପାରିଛି ?

ଗୋପାଳ—ନିଶ୍ଚୟ । କେବଳ ଜନପ୍ରିୟ କାହିଁକି ? କବିବର ରାଧାନାଥଙ୍କ କାବ୍ୟର ମଧ୍ୟ ସମକକ୍ଷ ହୋଇ ପାରିଛି । ତେବେ ପ୍ରଭେଦ ଏତିକି ଯେ ରାଧାନାଥଙ୍କର ପ୍ରକୃତି ଅଳଂକୃତା । ପ୍ରସାଧନ, ଅଳଙ୍କାର ଦ୍ୱାରା ପ୍ରକୃତିକୁ ଚିତ୍ର ପ୍ରତିମା ପରି ଗଢ଼ିଛନ୍ତି ରାଧାନାଥ । କିନ୍ତୁ ପଲ୍ଲୀଚିତ୍ରର ପ୍ରକୃତିରେ ମିଳେ ସରଳା, ବିଭୂଷଣହୀନା ପ୍ରକୃତିର ଜୀବନ୍ତ ପ୍ରତିମା । ରାଧାନାଥ ଯେଉଁଠି ଲେଖିଛନ୍ତି—

ସାୟନ୍ତନଘନ ଖେଳଇ ଗଗନେ,
ସୂର୍ଯ୍ୟାସ୍ତର ଐନ୍ଦ୍ରଜାଲିକ ବରଣେ ।
ଠାବେ ଠାବେ ଅଭ୍ରଖଣ୍ଡ ସ୍ୱର୍ଣ୍ଣକାନ୍ତି,
କ୍ଷୀର ତୋଳି ଶୈଳ ଶିଖୁଁ ଝିଙ୍କୁଥାନ୍ତି ।
ଶୋଭାରାଶି ଫୁଟି ଅନ୍ତରୀକ୍ଷେ ସ୍ଥଳେ
ତହୁଁ ଗୋ ତରଳ ବକ୍ଷେ ପ୍ରତିଫଳେ ।

ସେଠି ନନ୍ଦକିଶୋର ଲେଖିଛନ୍ତି :—

ଡାହାଣିଆ ଖରା ପଡ଼ୁଛି ବେଳ ଯାଉଛି ବୁଡ଼ି,
ଅସ୍ତାଚଳ ଶିରେ ତପନ ଯାଉଛନ୍ତି ବାହୁଡ଼ି ।
ବିଚିତ୍ର ବର୍ଣ୍ଣର ବୋଇତ ପ୍ରାୟ ଆଉ ପ୍ରକାର,
ବାରୁଣୀ ଗଗନେ ବୋଇତ ପ୍ରାୟ ଯାଉଛି ଭାସି ।

କହିଲେ କାମପାଳ ବାବୁ, ପ୍ରକୃତିରାଣୀକୁ ଏପରି ସ୍ୱଭାବ ସୁଲଭ ରୂପ ଦେଇ କେହି କେବେ ଚିତ୍ରିତ କରିଛି ? ଭଞ୍ଜଙ୍କଠାରୁ ଆରମ୍ଭ କରି ଆଜିର ରାଧାନାଥ ଯୁଗ ମଧ୍ୟରେ ଓଡ଼ିଆ ସାହିତ୍ୟର ଯେଉଁ ବିବର୍ତ୍ତନ ଦେଖା ଦେଇଛି ସେଥିରେ କେବଳ ନୂତନତା ଆଣିଛନ୍ତି ଏହି ନନ୍ଦକିଶୋର ବାବୁ । ସାହିତ୍ୟର ଗତାନୁଗତିକଠାରୁ ବହୁ ଦୂରରେ ତାଙ୍କର ରଚନା ଯେଉଁଠି ଭାଷାର କ୍ଲିଷ୍ଟତା ନାହିଁ, ଭାବର ଦୁରାଧିଗମ୍ୟତା ନାହିଁ । ସରଳ, ନିରାଡ଼ମ୍ବର ଲୋକଭାଷାର କବି ହିସାବରେ ନନ୍ଦକିଶୋର ବାବୁ ବାସ୍ତବିକ 'ପଲ୍ଲୀକବି' ପଦବାଚ୍ୟ । ପଲ୍ଲୀର ପ୍ରଭାତ, ସନ୍ଧ୍ୟା, ଝିଲ୍ଲୀ-ମୁଖର ଦ୍ୱିପ୍ରହରର ବର୍ଣ୍ଣନା ପାଠକର ହୃଦୟରେ ଦର୍ଶକର ଅନୁଭୂତି ଆଣିଦିଏ । ଶୁଣିବେ ତାଙ୍କର କେଇପଦ କବିତା ? (ଟେବୁଲ ଉପରୁ 'ପଲ୍ଲୀଚିତ୍ର' ଆଣି ପଢ଼ିଲେ— )

ଗାଆଁ ତଳେ ଘନ ଆମ୍ବତୋଟା, ଆଉ ଗଛ ଅଛି ଗୋଟା ଗୋଟା
ଦୀନ ଦୁଃଖୀଙ୍କ ସନ୍ତାନ ଧରି ଉଚ୍ଚ ତାନ ମାନ
ହରନ୍ତି ହୃଦୟ ବକ ଚଲ୍ ଗୀତ ଗାଇ
ଗୋଠାନ୍ତି ପତର ଜାଲ ଘେନିଣ ଟୋକାଇ ।

ଅଭିରାମ—ଶୁଣିଲେ କାମପାଳ ବାବୁ ? ପଲ୍ଲୀ ସର୍ବସ୍ୱ ଉତ୍କଳର ଏ ଯେଉଁ ଚିତ୍ର ଦେଇଛନ୍ତି ନନ୍ଦକିଶୋର ବାବୁ ତାକୁ କ'ଣ ଆପଣ ଅସ୍ୱୀକାର କରିବେ ? ରାଧାନାଥଙ୍କ ଭାଷାରେ 'ସୁନ୍ଦର ତୃପ୍ତିର ଅବସାଦ ନାହିଁ; କବିତାଟିକୁ ଯେତେଥର ପଢ଼ିଲେ ବି ହୃଦୟ ତୃପ୍ତ ନୁହେଁ । ଅପୂର୍ବ, ଅପୂର୍ବ ବର୍ଣ୍ଣନା ହୋଇଚି ସତେ ଏ କବିତାରେ । ପଲ୍ଲୀର ବର୍ଣ୍ଣନା ନୁହେଁ । ସରଳ ପଲ୍ଲୀପ୍ରାଣର ଆତ୍ମଲିପିକା ଏ 'ପଲ୍ଲୀଚିତ୍ର' ।

କାମପାଳ—(ନୀରବ ମୁଖରେ ତାଙ୍କର ଅବସାଦର କାଳିମା) 'ସୀତା ବିବାହ'ର ଅସଫଳତାରେ ମୁଁ ଆଜି ଯେଉଁଭଳି ଅନୁତପ୍ତ ହୋଇଛି ତା କଦାପି ଭୁଲିପାରିବି ନାହିଁ ଗୋପାଳବାବୁ ! ନନ୍ଦକିଶୋର ବାବୁଙ୍କୁ ମୁଁ ଯେଉଁ ଦୃଷ୍ଟିରେ ଏପର୍ଯ୍ୟନ୍ତ ଦେଖି ଆସୁଥିଲି ସେ ଧାରଣା ମୋର ସମ୍ପୂର୍ଣ୍ଣ ଦୂର ନ ହୋଇଥିଲେ ବି ସେ ଜଣେ ଭାବୁକ ତା କଦାପି ଅସ୍ୱୀକାର କରିପାରିବି ନାହିଁ ।

ଗୋପାଳ—ହତାଶ ହୁଅନ୍ତୁ ନାହିଁ ଆପଣ । ପ୍ରଥମ ରଚନାର ଅସଫଳତା ଆପଣଙ୍କୁ ନୂତନ ରଚନାର ପ୍ରେରଣା ଯେ ଦେବ ଏଥିରେ ସନ୍ଦେହ ନାହିଁ । ନନ୍ଦକିଶୋର ବାବୁଙ୍କଠାରୁ କବି ହିସାବରେ ଆମର ସାହିତ୍ୟ ଯେତେଟା

ଆଶା କରେ ନାଟ୍ୟକାର ହିସାବରେ ଆପଣଙ୍କଠାରୁ ମଧ୍ୟ ଆମେ ସେତିକି ଆଶା କରୁଁ ।

ରାଧାନାଥ—(ଭିତରୁ) ଖାଲି ସେତିକି ନୁହେଁ ଗୋପାଳ, ତୁମଭଳି ମେଧାବୀ ଛାତ୍ରମାନଙ୍କଠାରୁ ଓଡ଼ିଆ ସାହିତ୍ୟ ଏତିକିରେ ସନ୍ତୁଷ୍ଟ ହୋଇଯିବ ନାହିଁ । (ପ୍ରବେଶ କଲେ) ଭାଷା ଆଉ ସାହିତ୍ୟର ଏକାନ୍ତ ଉନ୍ନତି ଆବଶ୍ୟକ ।

(ସମସ୍ତେ ଅତର୍କିତଭାବେ ଠିଆ ହୋଇପଡ଼ି ନମସ୍କାର କଲେ । ରାଧାନାଥ ସମସ୍ତଙ୍କୁ ବସିବାକୁ ନିର୍ଦ୍ଦେଶ ଦେଇ ନିଜେ ଗୋଟିଏ ଚେୟାରରେ ବସିଲେ) ବୁଝିଲ ଗୋପାଳ, ଓଡ଼ିଆ ସାହିତ୍ୟର ଯେଉଁଭଳି ଦୁର୍ଦ୍ଦଶା ପଡ଼ିଥିଲା ଆଜି ତାହା ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହୋଇସାରିଥା'ନ୍ତା । କେବଳ ମଧୁବାବୁଙ୍କ ପ୍ରାଣାନ୍ତ ଉଦ୍ୟମ ଫଳରେ ସରକାର ବାହାଦୂର ଏ ଭାଷାକୁ ଏକ ଲକ୍ଷିତ ଭାଷାର ସ୍ୱୀକୃତି ଦେଲେ ସିନା !

ଗୋପାଳ—ମଧୁବାବୁଙ୍କର ଦାନ ଓଡ଼ିଆ ସାହିତ୍ୟ କଦାପି ଭୁଲି ପାରିବ ନାହିଁ । 'ବର୍ଣ୍ଣବୋଧ' ଲେଖି ଓଡ଼ିଆ ଭାଷାକୁ ସେ ଯେପରି ନିୟମିତ କରିଛନ୍ତି ସେଥିରେ ଚିରଦିନ ଏ ଜାତି, ଏ ଭାଷା ତାଙ୍କଠାରେ ଋଣୀ ହୋଇ-ରହିଥିବ ।

ରାଧାନାଥ—ସେତିକିରେ ଚଳିବ ନାହିଁ ଗୋପାଳ । ଓଡ଼ିଆ ଭାଷାର ଯେ କେତେଟା ଅଙ୍ଗ ଶୂନ୍ୟ ପଡ଼ିଛି ତାକୁ ଅଳଙ୍କୃତ କରିବ ତୁମେମାନେ । ନନ୍ଦକିଶୋର ଯେଉଁ ଦିଗ ବାଛି ଦେଲା ସେଦିଗରୁ ଓଡ଼ିଆ ଭାଷା ପାଇଲା ମୌଳିକତାର ଜୀବନ୍ୟାସ ଆଉ ସେଇ ମୌଳିକତାକୁ ତୁମେ ଲିପିବଦ୍ଧ କରିବ ନିୟମିତ ଭାବେ ।

ଗୋପାଳ—କିନ୍ତୁ.........

ରାଧାନାଥ–ମୁଁ ଜାଣେ ଆଜି ନନ୍ଦକିଶୋର ଅବସ୍ଥା ତଥାପି ମୁଁ ଯେଉଁ ଆଶା ନେଇ ଆସିଛି ତା'ର ପୂର୍ଣ୍ଣତା ଦାବୀ କରିବ ତୁମଠାରୁ । ଓଡ଼ିଆ ଜାତିର ସମ୍ବନ୍ଧ ଇତିବୃତ୍ତି ଆଉ ଓଡ଼ିଆ ସାହିତ୍ୟର ସଂଯତ ସୃଶୃଙ୍ଖଳ ଅଭିଧାନ ଦୁଇଟିଯାକରେ ଏକାବେଳକେ ଅଭାବ । ପ୍ରଥମଟିର ଅଭାବ ପୂରଣ ପାଇଁ ମୁଁ ଅଭିରାମଙ୍କୁ ଅନୁରୋଧ କରୁଛି । ଆଉ ଦ୍ୱିତୀୟଟିର ଭାର ତୁମ ହାତରେ ଗୋପାଳ ! ନାଟ୍ୟ ସାହିତ୍ୟରେ କାମପାଳ ଯେଉଁ ପଦକ୍ଷେପ ନେଇଛି ସେଥିରେ ଥିବା ନୂତନତାକୁ ମୁଁ ସ୍ୱାଗତ ଜଣାଉଛି ।

କାମପାଳ—(କୁଣ୍ଠିତ ଭାବେ) କିନ୍ତୁ.....

ରାଧାନାଥ—(ସ୍ମିତହସି) ମୁଁ ଜାଣେ କାମପାଳ, 'ସୀତା ବିବାହ' ନାଟକକୁ ତୁମର ବନ୍ଧୁମାନେ କିଭଳି ଦୃଷ୍ଟିରେ ଦେଖୁଛନ୍ତି । ସେଥିରେ ତୁମର ହତୋତ୍ସାହ ହେବା କ'ଣ ସମୀଚୀନ ?

ଅଭିରାମ – ସେଇ କଥା ତ ଆଜ୍ଞା ବର୍ତ୍ତମାନ ଆମେ ତାଙ୍କୁ କହୁଥିଲୁ । କାମପାଳ ବାବୁ ଏକାବେଳକେ ଧୈର୍ଯ୍ୟ ହରାଉଛନ୍ତି ।

ରାଧାନାଥ—ଛି କାମପାଳ, ତୁମେମାନେ ହେଲ ଯୁବକ । ଯୌବନର ଉନ୍ମାଦନା ସିନା ତୁମଠାରେ ଶୋଭାପାଏ । ଥରକର ଅସଫଳତାରେ ତୁମେ ଦେଖିବ ଭବିଷ୍ୟତର ସମ୍ପୂର୍ଣ୍ଣ ସାଫଲ୍ୟ । ଆମେ ହେଲୁ ବୃଦ୍ଧ । ଲୋଳ ଚର୍ମ, ଗଳିତ ଚକ୍ଷୁ ଦେଇ ଆଉ କେତେଦିନ ବା ସାହିତ୍ୟ ସେବା କରିବୁଁ ।.........
ହଁ ଗୋପାଳ, ତୁମ ସଂସଦର ଅନ୍ୟମାନଙ୍କୁ ତ ଦେଖୁନାହିଁ ।

ଗୋପାଳ—ରାମକୃଷ୍ଣ ବାବୁ ତ ଘରକୁ ଯାଇଛନ୍ତି । ବିନୋଦ ବାବୁଙ୍କର କ'ଣ ଗୋଟାଏ ବାହାରେ କାମ ଥିଲା ଯେ ମନା କରିଦେଇଗଲେ ....ଆଉ ନନ୍ଦକିଶୋର ବାବୁ ତ.......

ରାଧାନାଥ—ହଁ, ସେ ତ ଅସୁସ୍ଥ । ମୁଁ ତାର ଉପରପଡ଼ା ବସାକୁ ଯାଇଥିଲି । ତୁମେ ଟିକିଏ ଯିବ ଗୋପାଳ, ଦେଖିଆସିବ ତାଙ୍କୁ । ପିଲାଟା ବିଦେଶରେ ପଡ଼ିଛି । ତୁମମାନଙ୍କ ସହଯୋଗ ସମବେଦନା ସିନା ପରସ୍ପରକୁ ସାହାଯ୍ୟ କରିବ....ମଧୁବାବୁଙ୍କ ପାଖକୁ ପରା ତୁମେ ଯାଇଥିଲ କାମପାଳ ?

କାମପାଳ – ଆଜ୍ଞା......

ରାଧାନାଥ—କ'ଣ କହୁଥିଲେ ଆଉ ?

କାମପାଳ—ନନ୍ଦକିଶୋର ବାବୁଙ୍କ କଥା ତ ତାଙ୍କୁ ବଡ଼ ବାଧିଛି ।

ରାଧାନାଥ—ବୁଝିଲି । କିନ୍ତୁ ମଧୁବାବୁ ମୂଳରୁ ଭୁଲକରି ବସିଲେ । ତାଙ୍କୁ ବାରଣ କରିବା ସତ୍ତ୍ୱେ ବି ।....ଛାଡ଼, ତୁମର ଆଜି ସବୁ କି କି କଥା ପଡ଼ିଥିଲା ?

ଗୋପାଳ – କାମପାଳ ବାବୁଙ୍କ 'ସୀତା ବିବାହ' ନାଟକ ଏବଂ ନନ୍ଦକିଶୋର ବାବୁଙ୍କ 'ପଲ୍ଲୀଚିତ୍ର'ର ଆଲୋଚନା ।

ଅଭିରାମ—'ସୀତା ବିବାହ' ନାଟକରେ ରାମଚନ୍ଦ୍ରଙ୍କ ଚରିତ୍ରକୁ ଦୁର୍ବଳ ବୋଲି କହିବାରୁ କାମପାଳ ବାବୁ ଖେଦ ପ୍ରକାଶ କରୁଛନ୍ତି ।

ରାଧାନାଥ—ନାହିଁ, ତୁମେ ଭୁଲ କହୁନାହଁ ଅଭିରାମ । 'ସୀତା ବିବାହ'ରେ ବାସ୍ତବିକ ରାମଚନ୍ଦ୍ର ପରଶୁରାମଙ୍କ ନିକଟରେ ନିଜର ଦୁର୍ବଳତା ପ୍ରକାଶ କରିଛନ୍ତି ।

ଗୋପାଳ—ନନ୍ଦକିଶୋର ବାବୁଙ୍କ ମତରେ ମାଇକେଲ ମଧୁସୂଦନଙ୍କ 'ମେଘନାଦ ବଧ'ର ଲକ୍ଷ୍ମଣ ଚରିତ୍ର ଅନ୍ୟରୂପ କାମପାଳ ବାବୁଙ୍କର ଏଇ ରାମଚନ୍ଦ୍ର ।

ରାଧାନାଥ—(ସମ୍ମତିସୂଚକ ଭାବେ ମୁଣ୍ଡ ହଲାଇ) ମନ୍ଦ ଯୁକ୍ତି ନୁହେଁ । ନନ୍ଦକିଶୋରର ବୁଦ୍ଧିମତ୍ତାକୁ ମୁଁ ପ୍ରଶଂସା କରେଁ । ସେଥିପାଇଁ ବୋଧହୁଏ କାମପାଳ, ତୁମେ ଅଧୀର ହୋଇ ପଡ଼ୁଥିଲ ? ( କାମପାଳଙ୍କୁ ଚାହିଁ ) କିନ୍ତୁ ଏଥିରେ ଦୁଃଖିତ ହେବାର ତ କିଛି ନାହିଁ ( ହସିଲେ ) । କାମପାଳ ଆମର ନନ୍ଦକିଶୋର ସହିତ ଅନେକଥର ଯୁକ୍ତି କରେ ବୋଲି ମୁଁ ଶୁଣିଛି । ଭଲ, ଭଲ । ଏଇମିତି ପ୍ରତିଦ୍ୱନ୍ଦ୍ୱୀର ମନୋଭାବ ନେଇ ତ ମଣିଷ ଉନ୍ନତି କରେ । ମୁଁ ଭଗବାନଙ୍କୁ ପ୍ରାର୍ଥନା କରୁଛି ଏଇ ଭାବ ନେଇ ତୁମେମାନେ ଯେପରି ଓଡ଼ିଆ ସାହିତ୍ୟକୁ ବିଶ୍ୱର ସାହିତ୍ୟ ଦରବାରରେ ସମ୍ମାନିତ କରାଅ ।

( ସମସ୍ତେ ଅଧୋମୁଖ ହେଲେ । ରାଧାନାଥ ଉଠିଲେ) କିନ୍ତୁ ପରସ୍ପର ବିବାଦରତ ହୋଇ ଯେପରି ସମସ୍ତ ପଣ୍ଡ କର ନ ଦିଅ । ଗୁରୁଜନ ହିସାବରେ ମୋର ଏଇଟା ତୁମମାନଙ୍କ ପ୍ରତି ଉପଦେଶ । ମୁଁ ତେବେ ଆସୁଛି ଗୋପାଳ ! ତୁମମାନଙ୍କର ଯିବାବେଳ ବି ହୋଇଗଲାଣି । ···ନୁହେଁ ?

(ସମସ୍ତେ ଠିଆ ହେଲେ)

ଅଭିରାମ – ହଁ ଆଜ୍ଞା, ଆମେତ ପ୍ରାୟ ବାହାରିଥିଲୁ ।

ରାଧାନାଥ—(ଈଷତ୍ ହସି) ତୁମକୁ ତୁଚ୍ଛାଟାରେ ବସାଇ ରଖିଲି । ନୁହେଁ ?

(ତିନିହେଁ ନୀରବରେ ହସୁଥାନ୍ତି ତଳକୁ ଚାହିଁ) କିନ୍ତୁ ଆସନ୍ତା ଥର ମୁଁ ତୁମକୁ ବିରକ୍ତ କରିବା ପାଇଁ ଆଉ ଆସିବି ନାହିଁ । ମଧୁବାବୁଙ୍କୁ ଅନୁରୋଧ କରିବ । ତୁମର ମେଳରେ ରହି ମନଟା ତାଙ୍କର ସ୍ଥିର ହେଉ ।

ଅଭିରାମ—ମୁଁ ମଧ୍ୟ ତାଙ୍କୁ ପୂର୍ବରୁ ଅନୁରୋଧ କରିଛି ।

ରାଧାନାଥ—ଭଲ କରିଛ ଅଭିରାମ ! ତୁମମାନଙ୍କର କର୍ତ୍ତବ୍ୟପଥରେ ଆଗେଇ ଗଲେ ପଥପ୍ରଦର୍ଶକର ଅଭାବ ରହିବ ନାହିଁ । ମଧୁବାବୁ ହୁଅନ୍ତୁ ବା ମୁଁ ହୁଏଁ । ଆମେ କେବଳ ପଥପ୍ରଦର୍ଶକ ସିନା ! କିନ୍ତୁ ବାଟର ବାଟୋଇ ତୁମେ । ଆମର ପଥଚଲା ସରିଯାଇଛି । .... ହଉ, ତୁମେମାନେ ତେବେ ଆସ... ।

(ତିନିଜଣଯାକ ରାଧାନାଥଙ୍କୁ ବିନମ୍ର ପ୍ରଣାମ ଜଣାଇଲେ । ରାଧାନାଥଙ୍କ ପ୍ରସ୍ଥାନ ସହ ପଟକ୍ଷେପ)

## ଦୃଶ୍ୟ ପାଞ୍ଚ

[ ନନ୍ଦକିଶୋରଙ୍କ କଟକ ତଗରପଡ଼ାର ବସା । ଘରର ଗୋଟିଏ ପାଖରେ ପଡ଼ିଛି ଗୋଟିଏ ଟେବୁଲ ଓ ଚେୟାର କେତେଖଣ୍ଡି । ଟେବୁଲ ଉପରେ କେତୋଟି ବହି ସଜା ହୋଇ ରଖାଯାଇଛି । ଘରର ଅପର (ପୂର୍ବ) ପାର୍ଶ୍ୱରେ ଖଣ୍ଡିଏ ଦଉଡ଼ିଆ ଖଟ । ଦକ୍ଷିଣ ପାର୍ଶ୍ୱରେ ଦ୍ୱାର ଏବଂ ଗୋଟିଏ ଝରକା । ଦ୍ୱାରରେ ଝୁଲୁଛି ସ୍କ୍ରିନ୍ । ଝରକାରେ ଦେଖାଯାଉଛି ଅସ୍ପଷ୍ଟ କାଠଯୋଡ଼ି ନଦୀର ବିସ୍ତୀର୍ଣ୍ଣ ବାଲୁକାଶଯ୍ୟା । ଧାରେ ଧାରେ କୂଳ ବନ୍ଧ । ପ୍ରଭାତର କିଛି ସମୟ ପୂର୍ବରୁ । ଘର ଭିତରେ ମ୍ଳାନ ଆଲୋକ । ନନ୍ଦକିଶୋର ଗୋଟିଏ ଚେୟାର ଉପରେ ବସି ଝରକା ବାହାରକୁ ଚାହିଁଥିଲେ ଅତି ଅବଷ୍ଟ ଭାବରେ । ହୃଦୟରେ ଭାବର ଆଲୋଡ଼ନ ଏବଂ ସେହି ଆଲୋଡ଼ନ ଯେପରି ସଙ୍ଗୀତର ମଧୁଗୁଞ୍ଜନରେ ପ୍ରଭାତର ମଧୁର ହିଲ୍ଲୋଳ ସହିତ ଧୀରେ ଧୀରେ ଭାସି ଆସୁଥିଲା କେଉଁ ଏକ ଦୂର ଦେଶରୁ ]

ଆ-ଆରେ ଦକ୍ଷିଣା ବାଆ, ବହିଆ ତୁ ଝରଝିର,
ମୋ ଅଙ୍ଗ ଶୀତଳ କରି ଧାଇଁଯା ରେ ଧୀର ଧୀର ।
ମୁଁ ଯେ ଆତପ ତାପିତ
ଦେହେ ମନେ ସନ୍ତାପିତ
ଚାଲିଯା ତୋ ବାଟେ ମୋ ତନୁ ଶୀତଳ କରି ।୧।
ମଳୟ ତୋହର ଘର
ବହୁ ସାଗର ଶିକର
ଆଣୁ ତୁ ସୁଧାସମ୍ଭାର ମୋ ପ୍ରାଣ ପରଶ କରି ।୨।
ସୁରଭି କୁସୁମବନ
ବାସ କରି ଆହରଣ
ମହକାଇ ପ୍ରତି ପ୍ରାଣ ଯାଅ ଚାଲି ତୁ ବିତରି ।୩।
ସୁରଭି କୁସୁମବନ
ବାସ କରି ଆହରଣ
ସୁରଭି ସମ୍ଭାର ଦେଇ ପ୍ରାଣ ମନ ତୋଷ କରି ।୪।

ପରଶିଣ ପଦ୍ମବନ
ହର ମକରନ୍ଦ ଧନ
କର ତୋଷ ବିଶ୍ୱମନ ବହିଯାଅ ଧୀର ଧୀର
ଆ-ଆରେ ଦକ୍ଷିଣା ବାଆ ... ... .... ।୫।

( ସଙ୍ଗୀତର ମୂର୍ଚ୍ଛନା ବାୟୁସ୍ତର ସହିତ ଧୀରେ ଧୀରେ ମିଶିଗଲା । ଘରର ପୂର୍ବପଟର ଝରକା ଦେଇ ଘର ଭିତରେ ପଡ଼ିଲା ଆଷାଢ଼ର ପ୍ରଭାତ ସୂର୍ଯ୍ୟର କେତୋଟି ଲାଲ ରେଖା । ଦକ୍ଷିଣ ପଟର ଝରକା ଦେଇ କାଠଯୋଡ଼ିର ବିସ୍ତୀର୍ଣ୍ଣ ବାଲୁକାଶଯ୍ୟା, ଅସ୍ପଷ୍ଟ ବନରାଜି, କୂଳବନ୍ଧ ସବୁ ଯେପରି ଧୀରେ ଧୀରେ ସ୍ପଷ୍ଟ ହୋଇ ଉଠିଲା । ନନ୍ଦକିଶୋର ଅନ୍ୟମନସ୍କ ଭାବରେ ଉଠିଗଲେ ଝରକା ନିକଟକୁ । କିଛି ସମୟ ବାହାରକୁ ଚାହିଁ ଫେରି ଆସିଲେ ଅନ୍ୟମନସ୍କ ପଦକ୍ଷେପରେ )

ନନ୍ଦକିଶୋର—ପ୍ରଭାତ । ଆଷାଢ଼ର ପ୍ରଥମ ପ୍ରଭାତରେ କାଳିଦାସ ଲେଖିଥିଲେ—

ଆଷାଢ଼ସ୍ୟ ପ୍ରଥମଦିବସେ ମେଘମାଶ୍ଳିଷ୍ଟସାନୁଂ
ବପ୍ରକ୍ରୀଡ଼ା ପରିଣତ ଗଜ ପ୍ରେକ୍ଷଣୀୟଂ ଦଦର୍ଶ.....

—ମେଘଦୂତ

ସେ ଦିନର ସେଇ ରାମଗିରି ଏବେ ବି ଅଛି । ଆଷାଢ଼ର ପ୍ରଥମ ଦିବସରେ ଏବେ ବି ମେଘମାଳା ରାମଗିରି ପାହାଡ଼ର ଚୂଡ଼ା ଛୁଇଁ ଭାସିଯାଆନ୍ତି ଦୂରକୁ, ଖୁବ୍ ଦୂରର ସେଇ ଅଳକାପୁରୀକୁ ଆଜି ବି ବାରିସ୍ନାତ କୁଟଜ ପୁଷ୍ପର ମଧୁଗନ୍ଧ ବାୟୁକୁ ଆମୋଦିତ କରେ...କିନ୍ତୁ...କିନ୍ତୁ କାହାନ୍ତି ସେଇ କାଳିଦାସ ? କୁଟଜ ପୁଷ୍ପର ଅର୍ଘ୍ୟ ଦେଇ ମେଘକୁ ବନ୍ଦନା କରିବ ଆଜି କିଏ ? ....ନା....ନା (ପୁଣି ଫେରିଗଲେ ସେଇ ଝରକା ଆଡ଼କୁ ଦ୍ରୁତପଦରେ । ଝରକାର ରେଲିଂ ଧରି ଅତି ବ୍ୟାକୁଳ ଭାବରେ) ତୁମେ ଚାଲିଯାଅ, ତୁମେ ଚାଲିଯାଅ ମେଘ, ବାଦଲା ଆକାଶର ହେଇ ଅଗନ ତଳେ ଭାସି ଭାସି ବାୟୁର ହିଲ୍ଲୋଳରେ ଥରି ଥରି ନବ ଛନ୍ଦର ନବ ରାଗିଣୀ ତଳେ ଫୁଟି ଉଠିବ ତୁମର କେତେ ଯୁଗର କଳ୍ପନା; କେତେ ଆଶାୟୀ ପ୍ରାଣର ଜଳ୍ପନା..... ବିରହବିଧୁର ପଥିକ ବନ୍ଧିତାର ବିଚ୍ଛୁରିତ କେଶରାଶିରେ ତୁମକୁ ବନ୍ଦି କରିବା ପାଇଁ ନାହାନ୍ତି ଆଜି କାଳିଦାସ । ନାହିଁ ସେଇ ଅପୂର୍ବ ଛନ୍ଦ ମନ୍ଦାକ୍ରାନ୍ତା, ଆଉ ଅଳକାପୁରୀର ସେହି ବିରହିଣୀ ଯକ୍ଷ କନ୍ୟା ବି ବିଲୟ ଭଜିଛି କାଳର ଗର୍ଭରେ । ତୁମେ ଆଜି ସ୍ୱାଧୀନ । ମୁକ୍ତକଣ୍ଠରେ ତୁମେ ଆଜି ଗାଇବ ମେଘମହ୍ଲାରର ଅସରନ୍ତି ରାଗିଣୀ..................... ହେ ମେଘ, ହେ ଆଷାଢ଼ର ଆଶା, ଚାଲିଯାଅ, ଚାଲିଯାଅ ତୁମେ...

(ଧୀରେ ଧୀରେ ପୁଣି ଫେରି ଆସିଲେ । ଏଥର ଘର ମଧ୍ୟରେ ସ୍ପଷ୍ଟ ଦିଶାଗଲେ । ନନ୍ଦକିଶୋର ସେହିପରି ଭାବବିହ୍ୱଳ) ହଁ ...ପାଇଛି, ପାଇଛି ମୁଁ କବିତା । ଆଜିର ଏଇ ପୁଣ୍ୟ ପ୍ରାତଃର ମଧୁର ଲଗ୍ନରେ 'ପ୍ରଭାତ ସଙ୍ଗୀତ'ର ସ୍ୱରଲହରୀ ବାଇ ଅତୃପ୍ତ ଆତ୍ମାକୁ ମୋର ତୃପ୍ତ କରିବି ..ହେ ଆଷାଢ଼, ହେ ଉଷା-ପ୍ରେୟସୀର ସେହି ରକ୍ତରାଗ, ତୁମେ ମୋର କଣ୍ଠରେ ଦେଇଛ ରାଗିଣୀ, ମୋର ହୃଦୟରେ ଦେଇଛ ଭାବ (ଟେବୁଲ ଉପରେ ଥିବା ଗୋଟିଏ ଖାତାର ପୃଷ୍ଠା ଖୋଲିଲେ) ତୁମେ ମୋର କବିତା, ତୁମେ ମୋର ବନ୍ଦନା, ପ୍ରାଣର ପ୍ରଣୟିନୀ ତୁମେ... (ଲେଖିଚାଲିଲେ ଅବିରତ ଭାବେ । ଦ୍ୱାରର ପରଦା ଟେକି ଚାହିଁଲେ ରେବା । ନନ୍ଦକିଶୋରଙ୍କୁ ଏପରି ଅବସ୍ଥାରେ ଦେଖି ଫେରି ଯାଉଥିଲେ । ପୁଣି କ'ଣ ଭାବି ଭିତରେ ପ୍ରବେଶ କଲେ । ଚାରିଆଡ଼କୁ ଚାହିଁ ଧୀରେ ଧୀରେ ଗଲେ ନନ୍ଦକିଶୋରଙ୍କ ପାଖକୁ । ସେ କିନ୍ତୁ ଲେଖି ଚାଲିଥିଲେ ପୂର୍ବପରି । କିଛି ସମୟ ପରେ ରେବା ପୁଣି ଫେରି ଆସୁଥିଲେ । ଏତିକିବେଳେ ଚାହିଁଲେ ନନ୍ଦକିଶୋର—)

ନନ୍ଦକିଶୋର—କିଏ ?

ରେବା – (ଫେରି ପଡ଼ିଲେ)

ନନ୍ଦ – ଓ, ରେବା ? ଫେରି ଯାଉଛ ଯେ !

ରେବା—ଫେରି ଯାଉ ନଥିଲି ଯେ ··· ଭାବିଥିଲି ବାହାରେ ଅପେକ୍ଷା କରିବି ।

ନନ୍ଦ—କାହିଁକି, ବାହାରେ କାହିଁକି ଅପେକ୍ଷା କରିଥାନ୍ତ ? ମୋତେ ତ ଏଇଠି ଡାକି ପାରିଥାନ୍ତ ?

ରେବା—(ଅଳ୍ପ ହସି) ଡାକିବାର ସାହସ ଥିଲେ ତ !

ନନ୍ଦ – ଜୀବନର ଦୀର୍ଘକାଳ ଯେଉଁ ନାରୀ ଜନସେବାରେ କଟେଇ ଦେଇ ପାରିଛି ଜଣେ ସାମାନ୍ୟ ଦୁର୍ବଳ ମସ୍ତିଷ୍କ ଲୋକକୁ ଡାକିବାର ସାହସ ତାର ନାହିଁ ? ଆଶ୍ଚର୍ଯ୍ୟ !

ରେବା — ଆଶ୍ଚର୍ଯ୍ୟ ଆପଣ ନନ୍ଦକିଶୋର ବାବୁ ! କବିତାର ଅବିଚ୍ଛିନ୍ନ ଧାରାକୁ ଛିନ୍ନ କରିବା ପାଇଁ ସବଳ ହୃଦୟରେ ମୋର ଶକ୍ତି ନ ଥିଲା ।

ନନ୍ଦ – (ହସି) ଓ, ତୁମେ ତେବେ ମୋର କବିତା ଲେଖା ଦେଖି ସାରିଛ ? କିନ୍ତୁ ରେବା, କି କବିତା ବା ମୁଁ ଲେଖିବି ? ମନ୍ଦଃ କବିଯଶଃ ପ୍ରାର୍ଥୀ ମୁଁ ! ହୃଦୟର ଭାବକୁ କବିତାରେ ରୂପ ଦେବାପାଇଁ ଶକ୍ତି ବା ମୋର କାହିଁ ? ପଢ଼ିବ ସେ କବିତା ··· .... (ଖାତାଟିକୁ ଆଣି ରେବାଙ୍କ ହାତରେ ଦେଲେ । )

ରେବା—(ଅତି ଆଗ୍ରହରେ ନେଇ) ଅପୂର୍ବ ! ଆଷାଢ଼ର ପ୍ରଥମ ଦିବସର ବର୍ଣ୍ଣନାକୁ ଆପଣ କି ସୁନ୍ଦର ଭାବେ ରୂପ ଦେଇଛନ୍ତି ନନ୍ଦକିଶୋର ବାବୁ ! ଅନବଦ୍ୟ ଆପଣଙ୍କର ଏ ରଚନା -

ଘୋର ଗର୍ଜ୍ଜନେ ଆସୁଛି ବରଷା ମେଘ ଗରଜଇ ଗଗନେ,
ଚପଳା ଚମକେ ଦିଗ ଚମକିତ ଶୁଭେ ମର୍ମର କାନନେ ।
ଝରେ ଝର୍ଝର ଗିରି ନିର୍ଝର କଳସଙ୍ଗୀତେ ତଟିନୀ,
ପ୍ରେମ ଚଞ୍ଚଳେ ଯାଏ ଉଚ୍ଛଳେ ହେବାକୁ ସିନ୍ଧୁ ସଙ୍ଗିନୀ ।
ଗିରି ଉପବନେ ନାଚଇ ବର୍ହି ହୋଇ ଉନ୍ମନ ସୁନ୍ଦର,
କେକା କଳରବେ ମୁଖରି ଦିଗ୍‌ବଧୂ ଦିଶେ କି ନବୀନ ସୁନ୍ଦର !

ନନ୍ଦ—ଥାଉ ରେବା, ତୁମକୁ ମୁଁ ବେଶୀ ସମୟ ରଖି ପାରିବ ନାହିଁ ।

(ରେବା ପଢ଼ା ବନ୍ଦ କରି ଆଶ୍ଚର୍ଯ୍ୟଭାବେ ଚାହିଁଲେ) କର୍ମମୟୀ ତୁମେ । ଜୀବନର ମୂଲ୍ୟବାନ୍ ସମୟକୁ କବିତା ପାଠରେ ବ୍ୟର୍ଥ ସମୟ ଦେଇ କଟାଇ ଦେବାକୁ ମୁଁ ତୁମକୁ ଅନୁମତି ଦେଇ ପାରିବ ନାହିଁ । କହିଲ ଏବେ, ଆଜି ତୁମର କି ଉଦ୍ଦେଶ୍ୟ ନେଇ ଏ ଶୁଭାଗମନ .... ନିଶ୍ଚୟ କିଛି ମହତ୍ ଉଦ୍ଦେଶ୍ୟ ...

ରେବା—(ହସି) ମହତ୍ ଉଦ୍ଦେଶ୍ୟ ନିଶ୍ଚୟ । ମୋ ଠାରୁ କ'ଣ ଆପଣ କେବେ ସାଧାରଣ ଖବର ପାଇଛନ୍ତି ? (ଦ୍ୱାର ଆଡ଼କୁ ଚାହିଁଲେ)

ନନ୍ଦ—(କୌତୁକରେ) କ'ଣ ହେଇଛି କି ରେବା, ତୁମେ ମୋ ସହିତ ରହସ୍ୟ କରୁନାହଁ ତ ?

ରେବା—ଆପଣଙ୍କ ସହିତ କେବେ ମୋର ରହସ୍ୟ କରିବା ଦେଖିଛନ୍ତି ?

ନନ୍ଦ—କେବେ ତ ନୁହେଁ । କିନ୍ତୁ ....

ରେବା—(ଦ୍ୱାର ଆଡ଼କୁ ଚାହିଁ) କଲେ ଆସୁନୁ ଶାନ୍ତି ! ମଲା, ସେମିତି ଠିଆ ହେଇଥିବୁ ନା କଣ ମ ?

ନନ୍ଦ—(ଆଶ୍ଚର୍ଯ୍ୟରେ) ଶାନ୍ତି ? ତୁମ ସହିତ ଶାନ୍ତି ଆସିଥିଲେ ନା କ'ଣ ରେବା ?

ରେବା - ହିଁ, ଆସିଛି । ଶେଷ ବିଦାୟ ନେବାପାଇଁ ।

ନନ୍ଦ—ଶେଷ ବିଦାୟ !

ରେବା—ହିଁ । ଜାଣି ନାହାନ୍ତି ବୋଧହୁଏ ? ଶାନ୍ତିର ବିବାହ ।

ନନ୍ଦ - ଓ, ତା' କୁହ । କିନ୍ତୁ ଏଭଳି ଲୁଚି ରହିବାଟା ....

ରେବା—ନୂଆ ଦେଖୁଛନ୍ତି ନା କ'ଣ ? ସବୁଦିନେ ତ ତା'ର ସେଇ ଢଙ୍ଗ । ସିଧା ହେଇ କେବେ ସେ ଆପଣଙ୍କ ଆଗେ ଠିଆ ହେଇଛି ? ଆସିବାକୁ ତ ମୂଳରୁ ଡରୁଥିଲା । ମୋର କହିବାକୁ .... ...

ନନ୍ଦ—କିନ୍ତୁ ରେବା, ମୋତେ ତ ଡରିବାର କୌଣସି କାରଣ ନାହିଁ ।

ରେବା—ଡରନ୍ତି ନାହିଁ ? ଯା'ର ବ୍ୟକ୍ତିତ୍ୱ ନିକଟରେ ତା'ର ସମସ୍ତ ଆଶା ଜଳି ପୋଡ଼ି ପାଉଁଶ ହୋଇଯାଇଛି ତାକୁ ସେ ଡରିବନି ? ଆପଣ କ'ଣ କହୁଛନ୍ତି ନନ୍ଦକିଶୋର ବାବୁ ?

ନନ୍ଦ—ଭୁଲ ବୁଝୁଛ ରେବା ! ମଧୁବାବୁ ମୋର ଗୁରୁ । ଗୁରୁଙ୍କର କନ୍ୟା ହିସାବରେ ମୁଁ ଶାନ୍ତିଙ୍କୁ ସବୁବେଳେ ତୁମ ସହିତ ସମାନ ଚକ୍ଷୁରେ ଦେଖି ଆସିଛି । ଶାନ୍ତି ମୋର ଭଗିନୀ । ଅନ୍ୟ ରୂପରେ ମୁଁ ତାକୁ ସ୍ୱପ୍ନରେ ମଧ୍ୟ ଦେଖିନାହିଁ । କିନ୍ତୁ ସେ ମୋତେ ଭୁଲ ବୁଝି ଦୀର୍ଘଜୀବନଟାକୁ ହା-ହୁତାଶରେ କଟେଇ ଦେଲେ । ତାଙ୍କର ଏ ଭୁଲ ମୋର ପ୍ରଥମରୁ ଭାଙ୍ଗି ଦେବାର ଥିଲା ରେବା । ମୁଁ ଅପରାଧୀ ··· ଆସ ଶାନ୍ତି, ତୁମର ଏଇ ଶୁଭ ବିଦାୟ ବେଳାରେ ମୋର ଭୁଲ ପାଇଁ ମୁଁ କ୍ଷମା ମାଗିନେବି । (ଚାଲିଗଲେ ଦ୍ୱାର ପାଖକୁ)

ଶାନ୍ତି—(ପଶି ଆସିଲେ ଭିତରକୁ । ଆଖିରେ ଲୋତକ) ଭୁଲ ଆପଣ କରି ନାହାନ୍ତି ନନ୍ଦକିଶୋର ବାବୁ ! କଳଙ୍କିନୀ ମୁଁ । କଳଙ୍କର ବୋଝ ନେଇ ଅଗ୍ନି ତେଜରେ ତିଳ ତିଳ କରି ଦଗ୍ଧ ହୋଇଥା'ନ୍ତି । ଶାନ୍ତି ମୋର ଜୀବନରେ ନାହିଁ । ମୁଁ ହତଭାଗିନୀ ନନ୍ଦକିଶୋର ବାବୁ !

ନନ୍ଦ – ନା ଶାନ୍ତି, କିଏ କହେ ତୁମକୁ ହତଭାଗିନୀ ବୋଲି ? ଭକ୍ତକବିଙ୍କର କନ୍ୟା ତୁମେ । ହୃଦୟକୁ କଠୋର କର । ମନର ପବିତ୍ରତାରେ ନିଜର ଭବିଷ୍ୟତ ଗଢ଼ିନିଅ ଶାନ୍ତି ! ଜୀବନ ତୁମର ମଙ୍ଗଳମୟ ହେବ ।
(ଶାନ୍ତି ନୀରବରେ କାନ୍ଦୁଥିଲେ)

ରେବା – ଥାଉ ଶାନ୍ତି ! ଯେଉଁ ଆଶା ନେଇ ତୋତେ ମୁଁ ଟାଣି ଆଣିଥିଲି ସେ ଆଶା ମୋର ସଫଳ ହୋଇଛି । ନନ୍ଦକିଶୋର ବାବୁ କବି ହେଲେ ବି ତାଙ୍କର କଠୋର ବ୍ୟକ୍ତିତ୍ୱ ଆଗରେ ମୁଁ ବି ଦିନେ ପରାସ୍ତ ହୋଇଥିଲି । ଶେଷକୁ ତୋ'ର ବି ସେଇ ଦଶା ହେଲା । ଛିଃ ଶାନ୍ତି କାନ୍ଦନା ( ଲୁହ ପୋଛି ଦେଲେ ) । ଆଗରେ ତୋର ପ୍ରଶସ୍ତ ପଥ । ଜୀବନସଉଦା ସାରିବାକୁ ତେର ବେଳ ତୋର ବାକି ଅଛି । ଏମିତି ଅଧିର ହୋଇ ପଡ଼ିଲେ ଠକିଯିବୁ ଲୋ ଭଉଣୀ ! (ନିଜ ସ୍ୱରରେ ମଧ୍ୟ କ୍ରନ୍ଦନର ଆଭାସ । କିଛି ସମୟ ରଙ୍ଗ ମଞ୍ଚରେ କାରୁଣ୍ୟର ଛାୟା । ଅନ୍ତରାଳରୁ ଅର୍କେଷ୍ଟ୍ରାର ମୃଦୁ କରୁଣ ଗୁଞ୍ଜନ)

ଶାନ୍ତି – ବିଦାୟ ନନ୍ଦକିଶୋର ବାବୁ ! ଏ ଅଭାଗୀ ଜୀବନରେ ଆଉ କେବେ ଆପଣଙ୍କୁ ଦେଖିବି ଏ ଆଶା ମୋର ନାହିଁ । ଅଦିନର ମେଘ ପରି ଆପଣ ମୋତେ ଭୁଲିଯିବେ ···· ···

ନନ୍ଦ – ଅଦିନର ମେଘ ନୁହେଁ ଶାନ୍ତି, ଜୀବନର ଧ୍ରୁବତାରା ପରି ତୁମେ ମୋର ହୃଦୟରେ ସ୍ଥାନ ପାଇବ । ଜନ୍ମରୁ ଆମେ ଦୁଇଭାଇ ଭଗିନୀହୀନ । ଭଉଣୀଟିଏ ପାଇଁ ମା' ଆମର କେତେ ଆଶା କରି ନ ଥିବେ ! ତୁମେ ଦୁଇଜଣ ସେଇ ଆଶାର ଫଳ ଶାନ୍ତି । ମୋ ଆଖିରେ ରେବା ଆଉ ଶାନ୍ତିର ଆସନ ସମାନ ଉଚ୍ଚରେ ।

ରେବା—ଆଉ ଶାନ୍ତି ! ବିଦାୟର ଏଇ ପବିତ୍ର ବେଳାରେ ଲୁହର ଅମଙ୍ଗଳ ଚିହ୍ନ ପୋଛି ଦେ ।

( ଶାନ୍ତି ଲୁହ ପୋଛି ନନ୍ଦକିଶୋର ବାବୁଙ୍କୁ ପ୍ରଣାମ କଲେ । ନନ୍ଦକିଶୋର ଶ୍ରଦ୍ଧାରେ ତା'ର ମସ୍ତକ ସ୍ପର୍ଶ କଲେ । )

ନନ୍ଦ – ଯାଅ ଶାନ୍ତି, ଜୀବନ ତୁମର ମଧୁମୟ ହେଉ ।

( ରେବା ଓ ଶାନ୍ତି ଧୀରେ ଧୀରେ ଘରୁ ବାହାରିଗଲେ । ନନ୍ଦକିଶୋର ଚାହିଁ ରହିଲେ ଅପଲକ ନେତ୍ରରେ । ପଟକ୍ଷେପ )

## ଦୃଶ୍ୟ ଛଅ

[ ଉଗରପଡ଼ାର ନନ୍ଦକିଶୋରଙ୍କର ସୁନ୍ଦର ସେଇ ବସା । ସମସ୍ତ [illegible] । ନନ୍ଦକିଶୋର ଓ ଗୋପାଲ ପ୍ରହରାଜ କଥାବାର୍ତ୍ତା ହେଉଥିଲେ । ]

ଗୋପାଲ—ଆପଣ ଯାହା କୁହନ୍ତୁନା କାହିଁକି, ମୁଁ ଜାଣେ କାମପାଲ ବାବୁ ଏକଥା କଦାପି ବିଶ୍ୱାସ କରିବେ ନାହିଁ ।

ନନ୍ଦ—ବିଶ୍ୱାସ କରନ୍ତୁ ବା ନ କରନ୍ତୁ, ସେଥିପାଇଁ ମୁଁ ଦାୟୀ ନୁହେଁ । 'ଓଡ଼ିଆ ଲଲନା'ର ଲେଖକ ହିସାବରେ ସେ ଯେ ମୋତେ ଅବିଶ୍ୱାସ କରିବେ ମୁଁ ସେ କଥା ପୂର୍ବରୁ ଜାଣେ । କାମପାଲ ବାବୁ ମୋର ସହପାଠୀ ଥିବା ସମୟରୁ ସବୁ ଦିଗରେ ମୋର ପ୍ରତିଦ୍ୱନ୍ଦ୍ୱୀ—ଏକଥା ମୁଁ ଜୋର ଦେଇ କହିବି ।

ଗୋପାଲ—ତା'ଛଡ଼ା ବିଶ୍ୱାସ ବା କରନ୍ତେ କେମିତି ? 'ପଲ୍ଲୀଚିତ୍ର'ର ଆପଣଙ୍କ କବିତାକୁ ଯେ କହୁଛି ଗ୍ରାମ୍ୟ, 'ଓଡ଼ିଆ ଲଲନା'ର ଏ କବିତାକୁ ସମର୍ଥନ କରିବା ତା ପକ୍ଷରେ କେମିତି ବା ସମ୍ଭବ ହେବ । ସତରେ ନନ୍ଦକିଶୋର ବାବୁ, କି ଚହଲଟାଏ ନ ପକାଇଲେ ଆପଣ ?

ନନ୍ଦ—ସତ କହୁଛି ଗୋପାଲ ବାବୁ, ମୁଁ ଯଦି ପୂର୍ବରୁ ଏ ସବୁର ସୂଚନା ପାଇଥାନ୍ତି ତେବେ 'ଓଡ଼ିଆ ଲଲନା'ର ପରିକଳ୍ପନା ମଧ୍ୟ କରି ନଥା'ନ୍ତି । କିନ୍ତୁ···

ଗୋପାଲ—କ'ଣ ଆପଣ କହୁଛନ୍ତି ? ଜାଣନ୍ତି, ଏଇ କବିତା ପାଇଁ ଦେଶରେ ଆଜି କେତେ ଜଣଙ୍କର ଦୃଷ୍ଟି ପଡ଼ିଛି ଆପଣଙ୍କ ଉପରେ ?

ନନ୍ଦ—ହେଲେ ରକ୍ଷା ହେଇଯାଇଛି । କବିତାରେ ଛଦ୍ମନାମ ବ୍ୟବହାର ନ କରି ଯଦି ଅସଲ ନାମଟା ବ୍ୟବହାର କରିହେଇଥା'ନ୍ତା ତେବେ ହୁଏତ ମାନହାନି ମକଦ୍ଦମାରେ ଲଢ଼ିବାପାଇଁ ଆଜି ଆପଣଙ୍କ ସହିତ ସାହିତ୍ୟ ଚର୍ଚ୍ଚା ନ କରି ଆଇନ୍ ଚର୍ଚ୍ଚା କରିଥା'ନ୍ତି ।

ଗୋପାଲ—'ଶ୍ରୀ' ନାମଟି ଆପଣଙ୍କୁ ଯଥାର୍ଥରେ ଶ୍ରୀ ଦେଇଛି କୁହନ୍ତୁ । ଜାଣନ୍ତି ଗୋଟିଏ କଥା···'ଓଡ଼ିଆ ଲଲନା'ର ପ୍ରକାଶ ପରେ ରାଧାନାଥବାବୁ

ସ୍କୁଲରେ ଥାଇ ବିଶ୍ୱନାଥ ବାବୁଙ୍କ ପାଖକୁ ଯେଉଁଦିନ ଚ୍ୟାଲେଞ୍ଜ ମାଗନ୍ତି, ସେଦିନ ବିଶ୍ୱନାଥ ବାବୁ ତ ଅସମ୍ଭାଳ ···ଅଣନିଃଶ୍ୱାସୀ ହେଇ ଦଉଡ଼ିଛନ୍ତି ମୋ ପାଖକୁ ।

ନନ୍ଦ—(ଦୁଃଖରେ) କି କଥାଟା ବା ନ କଲି ମୁଁ ?

ଗୋପାଳ—ଆରେ ଶୁଣନ୍ତୁ ନା—ବିଶ୍ୱନାଥ ବାବୁଙ୍କର ଏ ଅବସ୍ଥା ଦେଖି ଘଟଣାଟାକୁ ମୁଁ ଠିକ୍ ଠଉରେଇ ନେଲି । ସତ କହୁଛି ନନ୍ଦକିଶୋର ବାବୁ, ଏତେ କଷ୍ଟରେ ସେଦିନ ବିଷୟଟାକୁ ମୁଁ ବନ୍ଦ କରିଛି ଯେ ତାଙ୍କ ଆଗରୁ ପଳେଇବା ଛଡ଼ା ଅନ୍ୟ ଗତି ନ ଥିଲା । ସେ କ'ଣ ଭାବିଥିବେ କେଜାଣି ?

ନନ୍ଦ—ନାଇଁ, ବିଶ୍ୱନାଥବାବୁ ସେଭଳି ଟିକିକ ପାଣିରେ ବୁଡ଼ିବା ଲୋକ ନୁହନ୍ତି । ବାହାରୁ ଯେତିକି ସରଳ ଦେଖାଯାନ୍ତି, ଭିତରଟା ତାଙ୍କର ସେତିକି ଜଟିଳ ଆଉ ସେତିକି ଗମ୍ଭୀର···

ଗୋପାଳ—ପ୍ରକୃତରେ ଖୁବ୍ ଧୈର୍ଯ୍ୟବାନ୍ ଲୋକ ସେ । ନ ହେଲେ 'ଉତ୍କଳ ସାହିତ୍ୟ'କୁ ଏତେଦିନ ବଞ୍ଚେଇବା ତାଙ୍କ ପକ୍ଷରେ ସମ୍ଭବ ହେଇ ନଥାନ୍ତା ।

··· ହଁ, କହୁଥିଲି ପରା···· ସେଇଠୁ କ'ଣ କଲେନା ରାଧାନାଥ ବାବୁଙ୍କ ସେଇ ଚିଠିଖଣ୍ଡିକ କାଢ଼ି ମୋତେ ଦେଖାଇଲେ । ମୁଁ ତ ଚିଠିଟା ପଢ଼ି ଅବାକ୍ । ରାଧାନାଥ ବାବୁ ଚିଠିଟାରେ 'ଓଡ଼ିଆ ଲଳନା'ରୁ ଅବିକଳ quote କରିଥିଲେ ଏଇ କେଇ ପଦ –

( ପକେଟରୁ ଖଣ୍ଡିଏ କାଗଜ କାଢ଼ି ପଢ଼ିଲେ— )

ଓ୍ୱାଟରସେଡ଼ ସମସାଙ୍ଗ, ବେଣୀ ଶିବଜଟା,
ମାସଖଣ୍ଡକରେ ମୁଣ୍ଡ ଧୁଏ ଥରେ ଫିଟା ।
ଦଣ୍ଡି, ନଥ, ଫୁଲି, ଗୁଣା, ଦସଣି ନାକର,
କାହାର କାହାର ଥାଏ କେଶରି ବେଶର ।

ନନ୍ଦ – (ଆଗ୍ରହରେ) ତା'ପରେ ?

ଗୋପାଳ—ଖାଲି ସେତିକି ନୁହେଁ, ଶୁଣନ୍ତୁ –

ମୋଟା ଶାଢ଼ୀ ଓ ମୁଣ୍ଡିଆ ହଳଦୀ ଗରଗର,
ମାସେ ଦୁଇମାସେ ଥରେ ଯାଏ ଧୋବାଘର ।
ଧାଇଁ ଚାଲେ ଗରବିଣୀ ନ ଦିଶଇ ପଥ,
ବଡ଼ ଦାଣ୍ଡେ ଚାଲେ ଯେହ୍ନେ ଜଗନ୍ନାଥ ରଥ ।
ପାନ ବୋଲ ଲାଗି କଳା ଦିଶେ ଦାନ୍ତପାଟି,
ଗୁଣ୍ଡିମିଶା ପାନ ଥିଲେ ଗାଲ ଯାଏ ଫାଟି ।

( ଏତକ ଉଲ୍ଲେଖ କରି ରାଧାନାଥବାବୁ ଚ୍ୟାଲେଞ୍ଜ କରିଛନ୍ତି—ଏପରି
...ସ୍ୱରରେ ଓଡ଼ିଆ ଲଳନା'ଙ୍କୁ ଚିତ୍ରଣ କରିଥିବା କବିତାକୁ ଆପଣ କେଉଁ
...ରେ 'ଉତ୍କଳ ସାହିତ୍ୟ'ରେ ସ୍ଥାନ ଦେଲେ ? )

—ସତେ ?

—ଏତିକରେ ଯଦି ଶେଷ ହୋଇଥା'ନ୍ତା ତେବେ ତ ବିଶ୍ୱନାଥ ବାବୁ ବେଶ୍ ଚୁପ୍‌ଚାପ୍ ବସି ଯାଇଥା'ନ୍ତେ। କିନ୍ତୁ ଯେତେବେଳେ କର୍ତ୍ତବ୍ୟ-ବୋଧିନୀ ସଭା ପକ୍ଷରୁ ପଣ୍ଡିତ ଦାଶ ଲେଖିଲେ ଯେ ଲେଖକର ନାମ ଉଲ୍ଲେଖ ନ କଲେ ସେ ମାନହାନି ମୋକଦ୍ଦମା କରିବେ ସେତେବେଳେ କିର ମହାଶୟଙ୍କ ଆଉ ସମ୍ଭାଳେ କିଏ ? ମେ ତେ ପଚାରିଲେ କ'ଣ କରିବା ଗୋପାଳ ବାବୁ ? ସତରେ କ'ଣ ଏ କେଶ୍‌ରେ ମାନହାନି ମୋକଦ୍ଦମା ହୋଇଯିବ ?

—ସେଇଠୁ ଆପଣ କ'ଣ କହିଲେ ?

—କହିନ୍ତି ଆଉ କ'ଣ ? ଅଢ଼େଇଦିନିଆ ଓକିଲ ହେଲେ ବି ସତ କଥାଟାକୁ ଚାପିରଖନ୍ତି କିପରି ?

—ହିଁ। ତା'ପରେ ବିଶ୍ୱନାଥ ବାବୁ ମୋ ପାଖକୁ ଆସି ମୋର ଅନୁମତି ମାଗିଥିଲେ। ମୁଁ କହିଲି ଯେଉଁଠି ଗୋଟାଏ ବିରାଟ ଅନୁଷ୍ଠାନ ପ୍ରତି ଆକ୍ଷେପ ଆସୁଛି ସେଠି ଏବେ ଜଣକର କ୍ଷତି ହୋଇଗଲେ ମନ୍ଦ କ'ଣ ?

—(ଉଚ୍ଚ ହାସ୍ୟ) ହୋ - ହୋ - ହୋ, ଆପଣ ଭଲରକମର ଚିଡାଟାଏ କାଟିଦେଲେ ହେ ନନ୍ଦକିଶୋର ବାବୁ। ଏକା ଦାନକେ ବାଜି ମାତ୍-କହିଲେ ଦେଖି ଓଡ଼ିଆ ସାହିତ୍ୟରେ ଏମିତି କବିତା କିଏ ଆଉ ଲେଖିଛି ?

(ବାହାରେ ଅଭିରାମ ଭଞ୍ଜଙ୍କ ପାଟି ଶୁଭିଲା)

—(ଘର ଭିତରକୁ ଦକ୍ଷିଣ ପଟର ଦ୍ୱାର ଦେଇ ପଶି ଆସୁ ଆସୁ) ମୋଟେ ନୁହେଁ ପ୍ରହରାଜେ ! ଭଞ୍ଜଙ୍କଠାରୁ ଆରମ୍ଭ କରି ରାଧାନାଥଙ୍କ ପର୍ଯ୍ୟନ୍ତ ସମସ୍ତେ ଖାଲି ଦେଖିଛନ୍ତି ଲଳନାର ରୂପରେ 'କନକର ଲତା', 'ଚପଳାର ପ୍ରଭା' ଆଉ 'ନୀଳଇନ୍ଦୀବର ସମ ଚକ୍ଷୁର ତାରକା'....ଯେମିତି ଆମ କାମପାଲ ବାବୁ ତାଙ୍କ 'ସୀତା ବିବାହ'ରେ ଲେଖିଲେ

'ଇନ୍ଦ୍ରନୀଳମଣି ଗୃହରେ ଶୋଇଛି ସଖୀ ସୁନାଗୋରୀ ସୀତା
ମେଘ କାନ୍ଥଥିଆ ଘରେ କଲେ ମିତ ବିଜୁଳି ଏଡ଼େ ଶୋଭିତା ?'

ହେଲେ ମୋଟା ଶାଢ଼ୀ ପିନ୍ଧା, ହରିତାଳ ଲେପିତା ନାୟିକାକୁ କେଉଁଠି ମୁଁ ଦେଖି ନଥିଲି ଅଜଯାକେ। ଯଥାର୍ଥ ଆପଣଙ୍କର ସୃଷ୍ଟି ନନ୍ଦକିଶୋର ବାବୁ ! ଫକୀର ମୋହନ କଥାରେ ଚମ୍ପାର ଯେଉଁ ଛବି ଆଙ୍କିଲେ ଆପଣ

କବିତାରେ ଓଡ଼ିଆ ଲଳନାର ସେଇ ଛବି ଆଙ୍କିଲେ ।.....ହଁ, ତା'ପରେ ନମସ୍କାର ନନ୍ଦକିଶୋର ବାବୁ ! ପ୍ରହରାଜଙ୍କୁ ମଧ୍ୟ ଅବଧାନ । କଥା ମଝିରେ ନମସ୍କାର କରିବାକୁ ଭୁଲିଯାଇଥିଲି ବୋଲି କିଛି ଭାବିବେ ନାହିଁ ।

(ଗୋଟିଏ ଚେୟାରରେ ବସି ଯାଇଥିଲେ)

ଗୋପାଳ—ବେଶ୍, ବେଶ୍ ଭୁଲିଯାଇ ଭଲ କରିଛନ୍ତି । କହିଲେ ଦେଖି ଓଡ଼ିଶାର କେଉଁ କାଳ ଭିତରେ ପଶିଛନ୍ତି ଆପଣ ?

ଅଭିରାମ—କୋଉ କାଳ ଆଉ ? ମହାକାଳର କବଳରେ ବହୁକାଳ ଧରି କବଳିତ ଥାଇ ଏବେ ବଳିଙ୍କ କୃପାରୁ ବେଳାରେ ଲାଗିଛି ।

ନନ୍ଦ—ବାଃ—ବାଃ ବେଶ ତ ଆପଣଙ୍କର ଶବ୍ଦାର୍ଥ ଯୋଜନା । କାଳଠାରୁ ଆସି ଏକାଥରକେ ବେଳାରେ ପହଞ୍ଚିଗଲେ ?

ଗୋପାଳ—ନାହିଁ ହେ ଭକ୍ତେ, କେଉଁଣ୍ଟିମାଳକୁ ଭକ୍ତେ ପଳେଇଲା ପରେ ଆପଣ ବି ବେଳାଭୂମିକୁ ଧାଡ଼ି ଦେଲେଣି । କାଳ ବୋଇଲେ ଅତୀତ ତାଳ । ମାନେ ଓଡ଼ିଶାର ଇତିହାସ ଲେଖିବେ ବୋଲି ଯେ ରାଧାନାଥ ବାବୁ ଆପଣଙ୍କ ଉପରେ ଭାର ଦେଇଥିଲେ ସେଥିରେ ଆପଣ କେତେଦୂର ଯାଇଛନ୍ତି ?

ନନ୍ଦ—ବାହ୍ ବା ! ଦୁଇ ସନ୍ନ୍ୟାସୀଙ୍କ ଦୃଷ୍ଟି ତ ବେଶ୍ ତୀକ୍ଷ୍ଣ !

ଅଭିରାମ—ଆପଣ କ'ଣ ଆମକୁ ଗୁଇନ୍ଦା କରି ଥୋଇଲେଣି କି ? ବଳିଙ୍କର ଧଳିଙ୍କ କଥା ମନେ ପଡ଼ିଲା ପରା !

ନନ୍ଦ—ନା, ହେ ନା । ସନ୍ନ୍ୟାସୀ ମାନେ ଆପଣ ହେଲେ ଅତୀତର ସନ୍ନ୍ୟାସୀ ଆଉ ଗୋପାଳ ବାବୁ ବି ସେଇ ଅତୀତ, ବର୍ତ୍ତମାନ ଭବିଷ୍ୟତ ମଧ୍ୟରେ ଉବୁଟୁବୁ ହେଉଛନ୍ତି ମାନେ ସବୁଯୁଗର ଭାଷା ଉପରେ ତାଙ୍କର ଦୃଷ୍ଟି ପଡ଼ୁଛି···ସେ ଦୃଷ୍ଟି ପୁଣି ଶ୍ୟେନ ଦୃଷ୍ଟି । ମୁଁ ସିନା ଖାଲି ଉପରେ ଉପରେ ଭାସି ଯାଉଛି····

ଗୋପାଳ – ହେଲେ ନନ୍ଦକିଶୋର ବାବୁ ଧଳିଙ୍କ କଥା ତ କାହିଁ ମୋତେ କେବେ କହିନାହାନ୍ତି ।

ଅଭିରାମ—ଆରେ, ଆପଣ ଏ ପର୍ଯ୍ୟନ୍ତ ଆମ ନୀଳମଣି ଧଳିଙ୍କୁ ଜାଣି ନାହାନ୍ତି ? କଟକର ପୋଲିସ ଏସ୍.ଆଇ. ମ !

ଗୋପାଳ—ଓ – ହୋ ନୀଳମଣି ଧଳି ! ସେ ତ ଦେଢ଼ମାସ ହେଲା ରୋଗରେ ପଡ଼ିଛନ୍ତି । ବଡ଼ ଖରାପ ଅବସ୍ଥା ହେଇଯାଇଥିଲା । ରେବାଙ୍କ ଦୟାରୁ ଏବେ ଟିକିଏ ସୁସ୍ଥ ଅଛନ୍ତି ।···ଆଚ୍ଛା, ନନ୍ଦକିଶୋର ବାବୁ' ରେବା ଆଉ ନୀଳମଣି ବାବୁଙ୍କୁ ନେଇ ଯେଉଁ ଗୁଜବଟା, ଉଠିଛି ସେଟା କ'ଣ ସତ ?

ନନ୍ଦ—ମିଛ ବା ହେବ କାହିଁକି ? ମନକୁ ବାନ୍ଧିରଖିବା ତ ଏତେ ସହଜ ନୁହେଁ । ସେଥିରେ ପୁଣି ନାରୀ ମନ ··· ସତେ ଗୋପାଳବାବୁ, ଆଶ୍ଚର୍ଯ୍ୟ ଏଇ ନାରୀ ମନ ··· ବର୍ଷ ବର୍ଷ ଧରି ଫ୍ରଏଡ୍ ସାହେବ ଏଇ ମନର ଗବେଷଣା ପାଇଁ କଟେଇ ଦେଇ ଶେଷକୁ ସ୍ୱୀୟ ବିଫଳତାରେ ସ୍ତମ୍ଭୀଭୂତ ହୋଇଛନ୍ତି । ଧନ୍ୟ ଏଇ ମନର ଗହନ । ଆଦର୍ଶର ମାୟାଜାଲ ବାହାରେ ଘେରେଇ ରଖିଲେ ବି ମନର ଅଦ୍ଭୁତ କୋଣରୁ ଏ ପ୍ରବୃତ୍ତି ମଣିଷକୁ କ'ଣ ନ କରେ ସତେ ? ଶେଷକୁ ରେବାପରି ନାରୀ ଯେ ଏ କାମ କରିବସିବ ଏକଥା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି ।

ଗୋପାଳ—ଛାଡ଼ନ୍ତୁ ସେ କଥା .... କହନ୍ତୁ ଅଭିରାମବାବୁ 'ଉତ୍କଳ ଇତିହାସ' ଲେଖିବାରେ ଆପଣ କେତେଦୂର ଆଗେଇଲେ ?

ଅଭିରାମ – ଏଇ ତ ପ୍ରତାପରୁଦ୍ର ଦେବଙ୍କ ପାଖରେ ପହଞ୍ଚିଛି ।

ଗୋପାଳ—କିନ୍ତୁ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'କୁ ପୂର୍ଣ୍ଣ କରିବା ପାଇଁ କଟକ ସହରର ଏ ଗଳିରୁ ସେ ଗଳି, ସେ ଗଳିରୁ ଏ ଗଳି, କେଉଁଠି ଉଇଖିଆ ତାଳପତ୍ର ପୋଥି, କେଉଁଠି ସାତପୁରୁଷର ଚୂନପତର ଖୋସା କାଗଜ ଘାଣ୍ଟିବା ସାର ହେଉଛି ··· କିନ୍ତୁ ପୂର୍ଣ୍ଣଚନ୍ଦ୍ରଙ୍କର ଆଉ ପୂର୍ଣ୍ଣ ହେବାର ଆଶା ମୋର ନାହିଁ ।

ନନ୍ଦ—ଜାଣନ୍ତି ଗୋପାଳବାବୁ, ରାଧାନାଥବାବୁ ଯାହାଙ୍କୁ ଯାହା ଥରେହେଲେ କହିଦିଅନ୍ତି ସେ କଥା କେବେ ତାଙ୍କର ବାହୁଡ଼ି ଯାଏ ନା । ଆଉ ଆପଣଙ୍କ ପକ୍ଷରେ ସେ ବାକ୍ୟ ଯେ ସମ୍ପୂର୍ଣ୍ଣ ସଫଳ ହେବ ଏ ଆଶା ମୋର ଅଛି ··· ହଁ, ଆପଣ ଆଜି କହୁଥିଲେ ପରା କାଠଯୋଡ଼ି ଆଡ଼େ ବୁଲିଯିବା ପାଇଁ । ଚାଲନ୍ତୁ ଯିବା ଖରା ଗଡ଼ିଲାଣି ।

ଗୋପାଳ—ଆରେ ମୁଁ ତ ଭୁଲି ଯାଇଥିଲି ସେ କଥା ! ଆପଣ ମନେ ପକାଇ ଦେଇ ନଥିଲେ ବଡ଼ Programme ଟା ଆମର ନଷ୍ଟ ହୋଇଯାଇଥାନ୍ତା । ( ଘଡ଼ି ଦେଖି ) ଏଇ ତ ସାଢ଼େ ଚାରିଟା ବାଜିବା ଉପରେ । ଚାଲନ୍ତୁ ଭଙ୍ଗେ ବୁଲି ଆସିବା ···

ଅଭିରାମ—ହଁ, ମୋର ବି ବହୁ ଦିନରୁ ଇଚ୍ଛା ଥିଲା । ହେଲେ ସୁଯୋଗ କାହିଁ ? ଆସନ୍ତୁ ନନ୍ଦକିଶୋର ବାବୁ ···· (ଉଠିଲେ)

ନନ୍ଦ – ହଁ, ଚାଲନ୍ତୁ ।

( ସମସ୍ତେ ଗୋଟି ଗୋଟି ହୋଇ ଦକ୍ଷିଣ ପଟର ସେଇ ଦରଜା ଆଡ଼କୁ ଯିବା ବେଳକୁ ସେଆଡ଼ୁ ଦରଜା ଠେଲି ପ୍ରବେଶ କଲେ ମଧୁବାବୁ । ତାଙ୍କୁ ଦେଖି ସମସ୍ତେ ଅପ୍ରସ୍ତୁତ । ଘୁଞ୍ଚି ଆସି ପ୍ରଣାମ କଲେ ସମସ୍ତେ । )

ମଧୁ—ଆରେ, ଆରେ ଗୋପାଳ, ଅଭିରାମ, ତମେମାନେ ସବୁ ଏଇଠି ? ମୋର ଧାରଣାଟା ତେବେ ଭୁଲ ହୋଇନାହିଁ । ବୁଲି ବାହାରିଛ ବୋଧହୁଏ ? ବେଶ୍, ବେଶ୍ ··· ମୁଁ ମଧ୍ୟ ତୁମମାନଙ୍କ ସହିତ ବହୁଦିନରୁ ବୁଲିଯାଇ ନାହିଁ ··· କିନ୍ତୁ ନନ୍ଦକିଶୋର, ତୁମ ସହିତ ମୋର ଗୋଟାଏ କଥା ଅଛି ···

ଗୋପାଳ—ଆମେ ତାହେଲେ ଆଜ୍ଞା ···

ମଧୁ—ହଁ, ହଁ ତୁମେ ଦୁହେଁ ତେବେ ଯାଅ । ଆମ ଯିବାଟା ସାମାନ୍ୟ ବିଳମ୍ବ ହୋଇଯାଇ ପାରେ ।

(ଅଭିରାମ ଓ ଗୋପାଳଙ୍କର ପ୍ରସ୍ଥାନ । ମଧୁବାବୁ ଓ ନନ୍ଦକିଶୋର ଫେରି ଆସି ଦୁଇଟି ଚେୟାରରେ ବସିଲେ)

ମଧୁ-ହଁ ··· ଭଗବାନଙ୍କ ଦୟାରୁ ଟାଉନ ସ୍କୁଲ ଭିକ୍ଟୋରିଆ ହାଇସ୍କୁଲ ହେଲା । ସେଥିରେ ତୁମଭଳି ଜଣେ ଉଦୀୟମାନ କବି ଆଉ ବିଶ୍ୱନାଥ ବାବୁଙ୍କ ଭଳି ଜଣେ ସ୍ନାତକ ଶିକ୍ଷକ ହୋଇ ପାରିଛନ୍ତି । ଏଥିରେ ମୋର ବିଶେଷ ଗର୍ବ । କିନ୍ତୁ ସବୁଦିନେ ଏଭଳି ଏକ ବେସରକାରୀ ସ୍କୁଲରେ ଶିକ୍ଷକତା କରି ତମେ କ'ଣ ଚଳି ପାରିବ ନନ୍ଦକିଶୋର ?

ନନ୍ଦ—କିନ୍ତୁ ମୁଁ ତ ଏ ପର୍ଯ୍ୟନ୍ତ ଅନ୍ୟ କିଛି ଚିନ୍ତା କରିନାହିଁ । ସେ ସମୟ ଆସିଲେ ହୁଏତ···

ମଧୁ—ନାଁ ନନ୍ଦକିଶୋର, ତୁମେ ଏବେ ବି ପିଲା । ଶିକ୍ଷକତା ଆଉ କବିତା ଲେଖିବା ଖେଳରେ ରହି ତୁମେ କିଛି ଅନୁଭବ କରି ପାରୁ ନାହଁ । ତୁମର ସେ ସମୟ ଆସିଲାଣି ବୋଲି ମୁଁ ଅନୁଭବ କରୁଛି । ମୋ ଅଧୀନରେ ଗୋଟାଏ ସବ୍‌ଇନ୍‌ସ୍‌ପେକ୍ଟର ପୋଷ୍ଟ ଖାଲି ଅଛି । ତୁମର ସେ ପୋଷ୍ଟଟା ପାଇଁ ଦରଖାସ୍ତ କରିବା ଉଚିତ ।

ନନ୍ଦ-ଯେଉଁ ସ୍କୁଲରେ ମୁଁ ଛାତ୍ର ଥିଲି ଆଉ ଆପଣଙ୍କ ଦୟାରୁ ଆଜି ତାହାର ଦ୍ୱିତୀୟ ଶିକ୍ଷକ । ସେ ସ୍କୁଲକୁ ମୋତେ ଛାଡ଼ିବାକୁ ହେବ ?

ମଧୁ-ହଁ ନନ୍ଦକିଶୋର, ନହେଲେ ଅର୍ଥାଭାବରୁ ତୁମର ସମସ୍ତ ପ୍ରତିଭା ଯେ ନଷ୍ଟ ହୋଇଯିବ ··· ତା'ଛଡ଼ା ସାଧନାର କ୍ଷେତ୍ର ଯେ ତୁମର ସଂକୀର୍ଣ୍ଣ ହୋଇ ଯାଉଛି ।

ନନ୍ଦ—କିନ୍ତୁ ଏଇଠି ରହିଲା ପୁଣି 'ପଲ୍ଲୀଚିତ୍ର', ନିର୍ମାଲ୍ୟ, 'କୃଷ୍ଣକୁମାରୀ', 'ପ୍ରଭାତ ସଙ୍ଗୀତ', ଜନ୍ମଭୂମି, 'ଶିଶୁଚିତ୍ର' ଆଦି କବିତା ମୁଁ ଲେଖିଛି ।

ମଧୁ—କିନ୍ତୁ ଏଣିକି ଉଚ୍ଚତର କ୍ଷେତ୍ର ପାଇବାକୁ ହେଲେ ତୁମକୁ ସବ୍‌ଇନସ୍‌ପେକ୍ଟର ହେବା ପାଇଁ ମୋର ଆଦେଶ ନନ୍ଦକିଶୋର ! ଜଣେ ବାଧ୍ୟ ଛାତ୍ର ହିସାବରେ ତୁମେ ସେ ଆଦେଶ ପାଲନ କରିବ ବୋଲି ମୁଁ ଆଶାକରେ ।

ନନ୍ଦ—(ଅଧୋମୁଖ) ଆପଣଙ୍କର ଇଚ୍ଛା ··· (କିଛି ସମୟ ନୀରବତା)

ମଧୁ—ନନ୍ଦ କିଶୋର !

ନନ୍ଦ—(ମୁହଁ ଟେକିଲେ)

ମଧୁ—ବ୍ରାହ୍ମ ସମାଜ ପ୍ରତି ତୁମର ଆଉ ପୂର୍ବର ସେ ମମତା ନାହିଁ ବୋଲି ମୁଁ ଅନୁମାନ କରୁଛି । କେତେ ଚେଷ୍ଟାରେ ମୁଁ ଏଇ ଧର୍ମାନୁଷ୍ଠାନଟି ଗଢ଼ିଥିଲି । ଭାବିଥିଲି ବିଶ୍ୱନାଥ ବାବୁ ଆଉ ତୁମର ଚେଷ୍ଟାରେ ଅନୁଷ୍ଠାନଟି ଦୀର୍ଘଜୀବୀ ହେବ । କିନ୍ତୁ ···

ନନ୍ଦ—କୁଳପୁରୋହିତ ବିଶ୍ୱନାଥ ବାବୁଙ୍କ ଆଦର୍ଶରେ ଅନୁପ୍ରାଣିତ ହେଇ ଏଇ ଧର୍ମଲାଗି ମୁଁ ଦିନେ ପାଗଲ ହେଇଥିଲି । ଏଥିପାଇଁ ଭାଇ ମୋତେ ନେଇ କେନ୍ଦ୍ରାପଡ଼ା ସ୍କୁଲରେ ପଢ଼ାଇଲେ । ଏଫ୍. ଏ. ପଢ଼ିବା ସମୟରେ ମୋର ବିବାହ ହେଲା । ଯେଉଁ ଧର୍ମ ପାଇଁ ମୋର ଏତେ ମମତା ତା ପ୍ରତି ମୁଁ ଉଦାସୀନ ହେଇପାରେ ? ମୁଁ ତ ସ୍ୱଚ୍ଛନ୍ଦରେ ସସ୍ତ୍ରୀକ ଏଇ ଧର୍ମରେ ଦୀକ୍ଷିତ ହୋଇପାରିଥାନ୍ତି ।

ମଧୁ—ତେବେ ?

ନନ୍ଦ—ଏ ଧର୍ମ ଓଡ଼ିଆର ଜାତୀୟତାକୁ ନଷ୍ଟ କରୁଛି । ଭାରତର ଜାତୀୟତା ରକ୍ଷା ପାଇଁ ରାମମୋହନ ଯେଉଁ ଧର୍ମ ପ୍ରତିଷ୍ଠା କରିଗଲେ ସେ ଧର୍ମ ଆଜି ଓଡ଼ିଆ ଜାତିର ବାମପନ୍ଥୀ (କଠୋର ଭାବରେ) ଯେଉଁ ସାହିତ୍ୟରଥୀମାନେ ଓଡ଼ିଆ ଭାଷାକୁ ବଙ୍ଗଳାର କବଳରୁ ରକ୍ଷାକଲେ ଆଜି ସେଇମାନଙ୍କ ଘରେ ଓଡ଼ିଆ ଜାତୀୟତାର ପତନ ଘଟିଛି । ଭାଇ, ଅପା, ଦାଦି, ଖୁଡ଼ୀ ଡାକ ବଦଳରେ ଦାଦା, ଦିଦି, କାକା, କାକୀ, ସମ୍ବୋଧନ ଓଡ଼ିଆ ପ୍ରତି ଯେ କିଭଳି ଅପମାନ ···ବ୍ରାହ୍ମଧର୍ମର ଲକ୍ଷ୍ୟ ମୋତେ ଯେଭଳି ମୁଗ୍ଧ କରିଥିଲା, ବଙ୍ଗଳାର ପ୍ରଭାବ ମୋତେ ସେଭଳି କ୍ଷୁବ୍‌ଧ କରୁଛି ···

ମଧୁ—(ନନ୍ଦକିଶୋରଙ୍କ ମୁହଁକୁ ତୀକ୍ଷ୍ଣଭାବରେ ଚାହିଁ) ହୁଁ ··· ତୁମ ଚିନ୍ତାଧାରାରେ ମଧ୍ୟ କବିତା ଭଳି ମୌଳିକତା ରହିଛି ···

ନନ୍ଦ—କିନ୍ତୁ ଏହି ଚିନ୍ତା ଦ୍ୱାରା ମୋର ଏକେଶ୍ୱରବାଦ କମି ଯାଇନି । ସବୁ ଧର୍ମର ଲୀଳାଭୂଇଁ ଏଇ ଓଡ଼ିଆ ମାଟିରେ ବ୍ରାହ୍ମଧର୍ମର ପ୍ରତିଷ୍ଠା ପାଇଁ ଯଥେଷ୍ଟ କ୍ଷେତ୍ର ରହିଛି । କୁଳବୃଦ୍ଧ ମଧୁସୂଦନ ରାଜନୀତିରେ ଓଡ଼ିଆକୁ ଅନ୍ୟର ଓଲିତଳେ ଠିଆ କରେଇ ନାହାନ୍ତି । ଜୀବନର ସମ୍ପୂର୍ଣ୍ଣ

ଅବକାଶକୁ ଯିଏ ଜନ୍ମଭୂଇଁ ପାଇଁ ମାଟିରେ ମିଶେଇ ଦେଇଛନ୍ତି, ତାଙ୍କର ଦାସ୍ଯାଦ ହେଇ ଏ ଦେଶର ଜାତୀୟତାକୁ ଲୋପ କରିବା ମୋ ଦ୍ଵାରା କଦାପି ସମ୍ଭବ ହେଇ ପାରିବ ନାହିଁ ।···

(ମଧୁବାବୁ ଦୀର୍ଘଶ୍ୱାସ ପକାଇ ଉଠିପଡ଼ିଲେ, ନନ୍ଦକିଶୋର ମଧ୍ୟ ତାଙ୍କ ଉଠିବା ପରେ ଉଠିଛନ୍ତି)

ମଧୁ–(ଦ୍ଵାର ଆଡ଼କୁ ଅନ୍ୟମନସ୍କଭାବେ ଯାଉଁ ଯାଉଁ) ମୁଁ କିନ୍ତୁ ଅନେକଦୂର ଆଗେଇ ଯାଇଛି ନନ୍ଦକିଶୋର ...

ନନ୍ଦ–(ତାଙ୍କର ଅନୁଗମନ କରୁ କରୁ) ଆପଣ ମୋର ଗୁରୁ । ଆପଣଙ୍କ କାର୍ଯ୍ୟରେ ଦୋଷ ତ୍ରୁଟି ଦେଖିବା ମୋର ଅନ୍ୟାୟ ···

ମଧୁ—(ହଠାତ୍ ବୁଲିପଡ଼ି) ଗୁରୁ ହିସାବରେ ମୁଁ ତୁମକୁ ଆଉ ଗୋଟିଏ ଅନୁରୋଧ କରିବି ନନ୍ଦକିଶୋର । ତୁମଠାରୁ ମୁଁ କେବେ ଗୁରୁ ଦକ୍ଷିଣା ନେଇ ନାହିଁ । ଆଜି ଦେଇ ପାରିବ ମୋତେ ସେଇ ଦକ୍ଷିଣା ? (ଚକ୍ଷୁ ଛଳଛଳ)

ନନ୍ଦ—ଆର୍ଯ୍ୟ ଗୁରୁ ଆପଣ । କି ଦକ୍ଷିଣା ମୁଁ ଦେଇ ପାରିବି ଆପଣଙ୍କୁ ? (ଅତ୍ୟନ୍ତ ବିନମ୍ର ଭାବରେ)

ମଧୁ–ଏ ଦେଶର ଜାତୀୟତା ଆଉ ମୌଳିକତାକୁ ନେଇ ଯେଉଁସବୁ ପଲ୍ଲୀ ବା ଗୀତି କବିତାର ପ୍ରଚଳନ ଅଛି ସେଗୁଡ଼ିକୁ ସଂଗ୍ରହ କରି 'ନିର୍ଝରଣୀ' ଭଳି ସୁନ୍ଦର ନାଁଟିଏ ଦେଇ ବହିଟିକୁ ମୋର ହାତରେ ଟେକିଦେବ ···· ପାରିବ ?···ପାରିବ ତୁମେ ? (ଆବେଗରେ ଘୁଞ୍ଚି ଆସିଲେ ନନ୍ଦକିଶୋରଙ୍କ ପାଖକୁ )

ନନ୍ଦ—ଆଶୀର୍ବାଦ କରନ୍ତୁ ମୋତେ (ଜାନୁପାତ ପୂର୍ବକ) । ଆପଣଙ୍କର ସେଇ ଆର୍ଯ୍ୟ ତପୋବନର ଝଙ୍କାରରେ ଜୀବନ ମୋର ଧନ୍ୟ ହେଉ । ଲେଖନୀ ମୋର ସଫଳ ହେଉ ··

ମଧୁ—(ନନ୍ଦକିଶୋରଙ୍କ ମୁଣ୍ଡରେ ହାତରଖି) ତୁମେ ଯଶସ୍ଵୀ ହୁଅ ନନ୍ଦକିଶୋର·····

ଯବନିକା

# ଦ୍ୱିତୀୟ ଅଙ୍କ

## ଦୃଶ୍ୟ ଏକ

[ କୁସୁମପୁରର ନନ୍ଦକିଶୋର ବାବୁଙ୍କ ପୂର୍ବର ସେଇ ଘର । ସମୟ ଦ୍ୱିପ୍ରହର । କୋକିଳ ବସି ପଢୁଥିଲେ 'ଶର୍ମିଷ୍ଠା' କାବ୍ୟର କେଇଟି ଧାଡ଼ି—]

ହସ୍ତିନାକୁ ଗଲେ ନରେଶ ବିଶ୍ୱସ୍ତ ରକ୍ଷୀ ଦେଇ ଶ୍ୟାମା ସଙ୍ଗେ,
ଗଲାବେଳେ ମୁଗ୍‌ଧା ଅନାଇଣ ଥିଲା ସତୃଷ୍ଣେ ନୃପ ଅପାଙ୍ଗେ ।
ସେ ବିଜନ ବନେ ସେ ମନମୋହନ ରୂପେ ସେ ସୁଧା ବଚନେ,
ସେ ସୁଧା ପରଶେ ଦ୍ରବିଲ ଅବଶେ ଶୁଚିସାତ୍ତ୍ୱିକ ଲକ୍ଷଣେ ।
ରହି ରହି ଚାହିଁ ପଛକୁ କାମିନୀ ଇତର ନିମିତ୍ତ ବ୍ୟାଜେ,
ସତୃଷ୍ଣ ତରଳ ଅପାଙ୍ଗ ଢାଳିଲା ନରେଶି ତରୁଣ ରାଜେ ।

( ଚନ୍ଦ୍ରକଳା ଆସିଛି । ସେ ବିବାହିତା )

ଚନ୍ଦ୍ର—( ସାମାନ୍ୟ ନୀରବ ରହି ) ବେଶ୍ ତ ଆଇ, ଦେଖୁଛି ଭଲ ରକମର କବିତା ପ୍ରିୟ .... ନାଁ 'ଭୁଲ ହୋଇଗଲା ...କବିତାପ୍ରିୟା ହୋଇ ଗଲଣି ତୁମେ । ଶୋଇବା, ବସିବା ଛାଡ଼ି ସବୁବେଳେ ସେଇ କବିତା ...

କୋକିଳ—( ବହିରୁ ମୁହଁ ଟେକି ଚାହିଁଲେ ହସ ହସ ହୋଇ ) କିଏ କଳା ! ଅପୂର୍ବ – କେଉଁଦିନ ଆସିଲୁ ମ ?

ଚନ୍ଦ୍ର – ସେ କଥା ଆଉ କାହିଁକି ଜାଣିବ ଆଇ ! ଦୂର ଯିଏ, ପର ସିଏ । ଗାଁରେ ଥିଲୁ ବୋଲି ଖିଆ ପିଆ ଛାଡ଼ି ସବୁଦିନେ ଏକା ସାଙ୍ଗ...ବର୍ଷେ ହେଲା ଗାଁରୁ ଗଲଣି, ଥରେ ହେଲେ ମୋ କଥା ମନେ ପକେଇଛ ଭଲା !

କୋକିଳ – ମାଧବ ନାହିଁ କଳା....ଆରେ ସେମିତି ଠିଆ ହୋଇଛୁ କ'ଣ ମ ? ବସ । ( ଚନ୍ଦ୍ରା ବସିଲା ) ... ଯେତେଥର ତୁମ ଅଜାଙ୍କୁ କହୁଛି କଳାର ଠିକଣାଟା ହେଲେ ଦିଅନ୍ତେ ! ଖାଲି କ'ଣ ନା କଳା ପାଖକୁ ମୁଁ ଚିଠି ଦେଇଦେବ । ସତ କହିବ କଳା, କେତେ ଖଣ୍ଡ ଚିଠି ତୁମେ ତାଙ୍କଠୁଁ ପାଇଛ .... ମିନ୍ଟୁ କହୁଲେ ଏକା ତମ ତାଙ୍କ ଗୁଣ ପକେଇବ ...

ନଥିବା ପାହାଡ଼ ପର୍ବତ ଦେଖି ତୁମେ ଆଈଙ୍କ ସାଙ୍ଗରେ ଭଲ କବିତା ଲେଖି ପାରବ ନନ୍ଦଅଜା । ମୋ ରାଣ, ତାଙ୍କୁ ଛାଡ଼ିବ ନାହିଁ ଏଥର ।
(ଚାହିଁଲେ କୋକିଲଙ୍କୁ ରହସ୍ୟପୂର୍ଣ୍ଣ ଦୃଷ୍ଟିରେ)

କୋକିଲ—ସାଙ୍ଗରେ ଯିବାପାଇଁ ଯେମିତି କିଏ ଗୋଡ଼ ଟେକି ବସିଛି । ତାଙ୍କ ପିଲାଙ୍କୁ ନେଇ ସିଏ ତାଙ୍କର ସମ୍ଭାଳନ୍ତୁ । ମୁଁ ତ ପଢ଼ିନାହିଁ । ପିଲାଟା ହେଲେ ଦି' ଅକ୍ଷର ପଢ଼ିଥାନ୍ତି ।

ନନ୍ଦ—ଶୁଣିଲୁ କଳା, (ହସି) ଅଈ ତୋର ବେଶ୍ ଚାଲାକି ଜାଣନ୍ତି । ପାରିକୁ ନେଇ ତ ମୁଁ ଆଉ ସମ୍ଭାଳିପାରିବ ନାହିଁ । ସେଇଠୁ ବାଧ୍ୟ ହୋଇ ପାରି ବୋଉଙ୍କୁ ନେବାକୁ ପଡ଼ିବ (ହସିଲେ । ହଠାତ୍ କୋକିଳଙ୍କ ହାତରେ ଥିବା ବହିଟିକୁ ଦେଖି) ଆରେ, ତୁମ ହାତରେ ସେଇଟା କ'ଣ ପାରିବୋଉ ?

କୋକିଲ—ମ' କ'ଣ ଆଉ ? ଖରିବେଳଟାରେ ବସିଥିଲି ଯେ ଏବେ ବହିରୁ ଖଣ୍ଡେ ଆଣି ପଢୁଥିଲି ··ହେଲେ ଏବେ ତୁମେ ଲେଖିଛ ସେ ବହିଟାକୁ । ନବ ତ ଫେରେଇ ନିଅ····

ଚନ୍ଦ – ଆଈ ଆମର ବଡ଼ କବିତାପ୍ରିୟା ହେଇ ଗଲେଣି ।

ନନ୍ଦ – ହଁ, ମନେ ପଡ଼ୁଛି ନା ତୋର କଳା, ସେଦିନ ଯେଉଁ କବିତା ପଢୁଥିଲୁ····
'ଯାଥରେ କବିତା ମୋର ପ୍ରିୟତମା ଘରେ ଧରନ୍ତୁ ଚମ୍ପକାଙ୍ଗୁଳି ଯୁତ ଚାରୁକରେ' –

କୋକିଲ—(କୃତ୍ରିମ ରାଗ) ସତେମ କଳା, କହିଲ ଦେଖି କି ଅଲକ୍ଷୁଣ କଥା ଏଗୁଡ଼ା ? ହାତର ଆଙ୍ଗୁଳିଗୁଡ଼ା ପୁଣି ଚମ୍ପାଫୁଲ କେମିତି ହେବ ମ ? ହେଲେ ବି ସେଥିରେ କ'ଣ କାମଦାମ କିଛି କରିହେବ ?

ନନ୍ଦ – (ହଠାତ୍ ଗମ୍ଭୀର ହେଇ) ହଁ ସତ କହିଛ ପାରିବୋଉ, ଆଙ୍ଗୁଳି ସହିତ ଚମ୍ପାକଢ଼ିର ଉପମାଟା ସତେ ମୋର ଭୁଲ ହେଇଗଲା । ଚମ୍ପାକଢ଼ିର ଆଙ୍ଗୁଳି ଥିଲା ସେକାଳର ରାଜକନ୍ୟାମାନଙ୍କର । ଭର୍ତ୍ତାଙ୍କ କୋଳରେ ଶୋଇ ହେମମାଳା ହୁଏତ ଚମ୍ପାକଢ଼ିର ଆଙ୍ଗୁଳିରେ ତାଙ୍କର କେଶବିନ୍ୟାସ କରିଥିବେ । ଆଉ ସିଆ ସୁନାଗୋରି ସୀତା ହସି ହସି ବନବାସୀ ରାମଙ୍କର ହାତ ଧରି ସ୍ୱର୍ଣ୍ଣମୃଗ ଆଡ଼କୁ ଇଙ୍ଗିତ କରିଥିବେ । କିନ୍ତୁ ଏଇ ବିଂଶ ଶତାବ୍ଦୀରେ ଆଙ୍ଗୁଳିସବୁ ଚମ୍ପାକଢ଼ିର ହେଲେ ନାରୀଟି ହୁଏତ ଆଜୀବନ କୁମାରୀ ରହିଯିବ । ମୋର ଭୁଲ ହେଇଗଲା ପାରିବୋଉ, ମୋର ଭୁଲ ହେଇଗଲା । ହେଲେ ଏ ଭୁଲର ପ୍ରାୟଶ୍ଚିତ୍ତ ମୋତେ ଶୀଘ୍ର କରିବାକୁ ହେବ (ବିଚଳିତ ଭାବେ ଚାଲିଗଲେ ଭିତରକୁ)

କୋକିଳ—ମୁଁ ଜାଣେ ପର୍ବ ଝିଅକ କଥାରେ କ'ଣ ନାଇଁ କଣ କରିବସିବେ । ଦେଖିଲ୍ କଲା, କ'ଣ ବା ମୁଁ କହିଲି । ସେଥିରେ ପାଗଲାଙ୍କ ପରି ହୋଇ ଚାଲିଗଲେ···

ଛବି – ତାଙ୍କୁ ତୁମେ ଚହ୍ନି ପାରିବ ନାହିଁ ଆଇ ! (ଭାବପ୍ରବଣ ହୋଇ) କିନ୍ତୁ ମୁଁ ତାଙ୍କୁ ଚହ୍ନିଥିଲି ବହୁତ ଆଗରୁ ।

କୋକିଳ—କ'ଣ ତୁମେ କହୁଛ କଲା !

(ଭିତରୁ ଡାକିଲା ପାର୍ବ)

ପାର୍ବ – ବୋଉଲୋ, ବୋଉ, ଛୁଆ କାନ୍ଦିଲଣି ପର୍ବ !

ଛବି—ନାଁ । ସେ କିଛି ନୁହେଁ । ତୁମେ ଯାଅ ଆଇ ! ଛୁଆ ତେଣେ ଡାକିଲଣି ··· ମୋ ମୁଣ୍ଡଟା କାହିଁକି କ'ଣ ହୋଇଗଲା । ସଞ୍ଜକୁ ପଛେ ଆଉଥରେ ଆସିବ ।

( ବଟଲକ ଘରେ ଚାଲିଗଲା । କୋକିଳ ଚାହିଁଥିଲେ ଆଶ୍ଚର୍ଯ୍ୟ ହୋଇ । )

ପରଦା

## ଦୃଶ୍ୟ ଦୁଇ

[ କୁସୁପୁର ଗାଁ ଦାଣ୍ଡ । ଅଦୂରରେ ପଞ୍ଚାମୁଣ୍ଡାଇ କେନାଲ ବନ୍ଧ । ଲଲଟଗିରି ପାହାଡ଼ର କିୟଦଂଶ ଦେଖାଯାଏ । ସମୟ ସୂର୍ଯ୍ୟାସ୍ତର ପୂର୍ବରୁ । ଗୋଟିଏ ପାଖରେ ବସି ବମ୍ବାଧର ନିବିଷ୍ଟ ମନରେ ଛବି ଆଙ୍କୁଥିଲେ । ଅନ୍ୟପାଖରୁ ପଶିଆସିଲେ ଚନ୍ଦ୍ରକଳା । କାଖରେ କଳସୀଟିଏ ]

ବମ୍ବାଧର – (ଚନ୍ଦ୍ରକଳା ଚାଲିଯାଇଥିବା ବେଳେ ପଛରୁ ଦେଖି) ହ୍ଵାଲ୍ଟ୍...

ଚନ୍ଦ୍ର—(ଚମକିପଡ଼ି ହଠାତ୍ ଫେରି ଚାହିଁଲା) କିଏ ମ ? ମଲା, ବମ୍ବାଭାଇ ! ତୁମେ ଏ ଦାଣ୍ଡଟାରେ ବସି କ'ଣ କରୁଛ ମ ? (ଛବି ଆଙ୍କିବା ଦେଖି) ଓ, ଛବି ଅଙ୍କା ଚାଲିଛି ପରା !

ବମ୍ବା—ବେଶ୍, ବେଶ୍ ଢେର କହିଲୁଣି...ଏବେ ପାଟି ତୁଣ୍ଡ ନ କରି ସୁନାଟି ପରି ଯେମିତି ଠିଆ ହେଇଛୁ ସେମିତି ଠିଆ ହେଇଥା ।

(ଛବି ଆଙ୍କିବାରେ ଲାଗିଯା'ନ୍ତି)

ଚନ୍ଦ୍ର—ବେଶ୍ କଥା ତ ତମେ କହୁଛ ବମ୍ବାଭାଇ ! ପାଣିନେଲେ ଦୋଉ ତେଣେ ଚୁଲି ଲଗେଇବ । ଆଉ ତୁମେ ମୋତେ କହୁଛ ଯେମିତି ଅଛୁ ସେମିତି ଥା...

(ଚାଲିପଡ଼ୁଥିବା ବେଳେ ଡାକଲେ ବମ୍ବାଧର)

ବମ୍ବା—ମଡ଼େଲଟା ଖରାପ ହେଇଯିବ କଲା, ସାବଧାନ କରିଦେଉଛି । ପାଞ୍ଚ ମିନିଟ ଅପେକ୍ଷା କରିବାକୁ ମୋର ଆଦେଶ...

(କୁଆଡ଼କୁ ନ ଚାହିଁ ଛବି ଆଙ୍କୁଛନ୍ତି)

ଚନ୍ଦ୍ର—ମଡେଲ ! (କୃତ୍ରିମ ଆଶ୍ଚର୍ଯ୍ୟ) ମୋତେ ପୁଣି ମଡେଲ କହି ତୁମେ ଚିତ୍ର କରୁଛ ଏଇ ବାର୍ ରାସ୍ତାଟାରେ ? କ'ଣ ବାଇଆ ହେଲ ବମ୍ବାଭାଇ ! ଲୋକେ ଦେଖିଲେ କ'ଣ କହିବେ ସବୁ !

ବମ୍ବା—(ପୂର୍ବପରି ଛବି ଆଙ୍କି ଚାଲିଛନ୍ତି) କହିବେ ଭଉଣୀର ଛବି ଭାଇ ଆଙ୍କୁଛି.... ମନ୍ଦ କ'ଣ ?

ଚନ୍ଦ୍ର—ନା—ନା, ଛବି ପଛେ ତୁମେ ପରେ ଆଙ୍କିବ । ମୁଁ ଯାଏଁ । ତେଣେ ଦୋଉ ଚାହିଁ ବସିଥିବ ।

ଚମ୍ପା—ମୋଟେ ନୁହେଁ କଲା, ବୋଉ ତୋତେ ମୋଟେ ଗୃହିଁ ନଥିବ । ···ହୁଁ ଗୃହିଁଥିଲେ ବ ବେଲକୁ ଗୃହିଁ ନଥିବ ।

ଚନ୍ଦ—କ'ଣ କହୁଲ ?

ଚମ୍ପା—ମାନେ ପାଞ୍ଚ ମିନଟ୍‌ରୁ ଏଇ ପ୍ରାୟ ଗୃର ମିନଟ ଗୃଲିଗଲଣି । ଅଉ ମୋଟେ ଗୋଟେ ମିନଟ୍‌ର କଥା···ପାଞ୍ଚ ମିନଟର ବଲମ୍ବକୁ ବୋଉ ବୋଧହୁଏ ବଲମ୍ବ ବୋଲି ଧରପାରବ ନାହିଁ । ···ହୁଁ, ଏଇ ସରଗଲ କଲା···ବେଶ୍···ବେଶ୍ ପାଟିଟା ବନ୍ଦ କରଦେ ତ ଏଥର·····

ଚନ୍ଦ—(ପାଟି ବନ୍ଦ କର ତର୍ଜମାଦ୍ୱାର 'ଖର କଣେ'ର ଇଙ୍ଗିତ ଦେଲ) ,

ଚମ୍ପା—ଉଁ ହୁଁ ମୋଟେ ନୁହେ କଲା, ହାତ ସହୁତ ମୁଣ୍ଡଟା ବ ଥର ଯାଉଛୁ····

ଚନ୍ଦ—(ସ୍ଥିର ହୋଇ ଠିଆ ହେଲ )

ଚମ୍ପା—ହୁଁ ....ବେଶ୍ ହେଇଛୁ ( ଚନ୍ଦଟି ହାତରେ ଧର ) ଦେଖିଲୁ କଲା ! ଛବଟା ତୋ ମନକୁ ପାଇଛୁ କ ନାହିଁ ?

ଚନ୍ଦ—(ଛବଟି ନେଇ) ଇସ୍ ! କ ସୁନ୍ଦର ଆଙ୍କିଛ ମ ଚମ୍ପାଭାଇ ! ଅବକଲ ମୋତେ ଉତାର ନେଇଛ···ହେଲେ ଚମ୍ପାଭାଇ କାହାକୁ ଦେଖେଇବ ନାହିଁ ଏକା···

ଚମ୍ପା—ହୁଁ ! ବେଶ୍ ତ କହୁଛୁ ତୁ, ଚନ୍ଦକଲା ପ୍ରଦର୍ଶନୀକୁ ଛବଟା ପଠେଇବ ବୋଲି ଏତେ ପରଶ୍ରମ···ସେଥିରେ ତୁ କହୁଛୁ କ'ଣ ନା···

ଚନ୍ଦ—କାହା ପ୍ରଦର୍ଶନୀକୁ ପଠେଇବ ?

ଚମ୍ପା– ଓଃ, ବୁଝିପାରଲୁ ନାହିଁ ପରା ! ତୋ କଥା କହୁନାହିଁ ମ ! ଚନ୍ଦ ମାନେ ପେଣ୍ଟିଂ ଆଉ କଲା ମାନେ ଆର୍ଟ ବୁଝିଲୁ ? ଫାଇନ ଆର୍ଟସ ଏକ୍‌ଜିବଶନ୍‌କୁ ଛବଟାଏ ଦେବ ବୋଲି ନନ୍ଦକଶୋର ବାବୁ ମୋତେ ମାସକ ଆଗରୁ ତାଗିଦ କଲେଣି । ହେଲେ ଆଙ୍କନ୍ତୁ ବା କପର ? ମଡ଼େଲ ପାଇଲ ବେଲକୁ ଲେଣ୍ଡସ୍କ୍ୟାପ୍ ନାହିଁ ପୁଣି ଲେଣ୍ଡସ୍କ୍ୟାପ୍ ପାଇବା ବେଲକୁ ମଡ଼େଲ ବ ନାହିଁ । ଆଜ ବଡ଼ ଶୁଭ ଅନୁକୂଳରେ ବାହାରଆସି ବସି ଯାଇଥିଲି । ଲେଣ୍ଡସ୍କ୍ୟାପ୍ ମିଳଲ । ଆଉ ହଠାତ୍ ମଡ଼େଲ୍‌ର ଅଭାବଟାକୁ ତୁ ପୂରଣ କରଦେଲୁ । ତୋର ପର ମଡ଼େଲଟିଏ ଏକା ମୁଁ ବହୁଦନରୁ ଖୋଜୁଥିଲ ।

ଚନ୍ଦ—ମୋର ପର ?

ବମ୍ବା—(ଅଭିନୟ ଦ୍ୱାରା ଆଙ୍ଗୁଳିରେଖା ଗଣି) ନବୀନବୟସୀ, କାଖରେ କଳସୀ, ଅଳସି ଚଳସି – ଏକଦମ୍ ଶାନ୍ତି personified ଓଡ଼ିଆ ଲଳନା ସାଙ୍ଗକୁ ଲେଣ୍ଡସ୍କ୍ୟାପ୍ ଯୋଗେଇଲେ ନିଳଗିରି ପାହାଡ଼, ବିରୂପାନଈ, ସେ ପାଖର (ପଶ୍ଚିମ ପଟକୁ ଠାରି) ସେଇ ନାଲି ସୂର୍ଯ୍ୟଟା, କେନାଲ ପାଖ ତେଙ୍ଗା ତାଳଗଛ ଦିଟା ।, ଆଉ ସେଇ ଝଙ୍କାଳିଆ ବରଗଛ ଉପରୁ ଯେଉଁ ବଗ ବଗୁଲି ଦି'ଟା ଉଡ଼ିଗଲେ ··ବେଶ୍ ଛବିଟା ହେଇଗଲା····

ଚନ୍ଦ—(ଭୟରେ) ତୁମେ କ'ଣ କହୁଛ ବମ୍ବାଭାଇ । ଛୁଆଦିନର ପାଗଳାମି ତୁମର ଆଉ ଗଲାନାହିଁ, ଏକଥା ହେଲେ ମୁଁ କୁଳରେ ରହିବି ତ ?

ବମ୍ବା—ଓ, ତୋ ଶାଶୁଘର କଥା କହୁଛୁ ତ ? କିଛି ପରବାୟ କରନା । ଶାଶୁ ଘରକୁ ଯାଇ ଛୁଆ ପିଲାର ମା' ହେଲେ ବି ବମ୍ବାଭାଇ ଆଗରେ ତୁ ଯେଉଁ କଲାକୁ ସେଇ କଲା···ଆଉ ତୋ ବରକୁ ମୁଁ ଭଲଭାବେ ଜାଣେ ! କିଛି ପରବାୟ କରନା ତୁ । ସବୁ ଠିକ୍ ହେଇଯିବ । ···ହିଁ, କହିଲୁ କଲା ଛବିଟାର ନାଁ କ'ଣ ଦିବା ? ଆଚ୍ଛା, ଆଚ୍ଛା, କିଛି ପରବାୟ ନାହିଁ, ସବୁ ଠିକ୍ ହେଇଯିବ । ଛବିଟା ଯେଉଁଠି ଠିକ୍ ହେଲାଣି ନାଁ ଦିବାଟା ଆଉ କୋଉ କଥା ? ହିଁ···ତୁ ଯା ··କ'ଣ ବୋଉ ପାଇଁ ପାଣି ନବୁ ପରା ?

ଚନ୍ଦ—(ସେଇମିତ ନିର୍ବାକ୍ ଭାବରେ ଠିଆ ହୋଇଥାଏ)

ବମ୍ବା – ଆରେ ଏମିତ ଚାହିଁଛୁ କ'ଣ ମ ?

ଚନ୍ଦ – ତୁମେ ମୋତେ ଉଚ୍ଛନ୍ନ କରିଦେବ ।

ବମ୍ବା—ମୋଟେ ନୁହେଁ, କଲା, ମୋଟେ ନୁହେଁ····ହୁଁ···ଛବିଟାର ନାମ 'ପଲ୍ଲୀବାଳା'····ପ୍ରଦର୍ଶନୀରେ ରଖିଦେଲେ କେହି ଚନ୍ଦକଲା ବୋଲି ଆଦୌ ଧରି ପାରିବେ ନାହିଁ···ତୁ ଗୋଟାଏ ସେଇଥିକୁ ଡରୁଛୁ ? କେଡ଼େ ଓଲଟାଏ ମ ?

ଚନ୍ଦ – ହଉ ଦେଖିବ ଏକା ବମ୍ବାଭାଇ,·· ସବୁ ନବରଙ୍ଗ ତୁମର ବାହାରିଯିବ

(ସାମାନ୍ୟ ହସି ଇଙ୍ଗିତ ଦେଇ ଚାଲିଗଲା)

ବମ୍ବା—(ତୁଳୀ, ରଙ୍ଗଦାନୀ ଇତ୍ୟାଦି ଉଠାଉ ଉଠାଉ) ଆଚ୍ଛା, କିଛି ପରବାୟ ନାହିଁ । ସବୁ ଠକ୍ ହେଇଯିବ···

ସୂର୍ଯ୍ୟମଣି—(ପ୍ରବେଶ କରି) କେଉଁଟା ହେଲେ ତୁମର ବେଠିକ୍ ରହୁଛି କହିଲ ବମ୍ବାଧର !

ବସ୍ତ୍ର—(ଫେର ଘୁରି) ଓ, ସୂର୍ଯ୍ୟମଣି ବାବୁ !

ସୂର୍ଯ୍ୟମଣି – ହଁ, ଖାଲି ଏଇମିତି ରଙ୍ଗ ତୁଳୀ ଧରି ବସିଗଲେ କ'ଣ ସବୁ ଠିକ୍ ହୋଇଯିବ ବୋଲି ତୁମେ ଭାବୁଛ ?

ବସ୍ତ୍ର—କାହିଁକି, ଠିକ୍ ତ ହୋଇ ଯାଇଛି ।

ସୂର୍ଯ୍ୟମଣି – କ'ଣଟା ଠିକ୍ ହୋଇ ଯାଇଛି ?

ବସ୍ତ୍ର—ଏଇ ଛବି । ନନ୍ଦକିଶୋର ବାବୁଙ୍କର ଏଇ ଛବିଟା ପାଇଁ ବେଶୀ ଡ଼ିଗିଦ୍ ଥିଲି । ଏଇଥର ପଠେଇ ଦେବି ପ୍ରଦର୍ଶନୀକୁ ।

ସୂର୍ଯ୍ୟମଣି—ଓ, ଛବିଟା ତା'ହେଲେ ଏତେ ବାନକେ ହେଲା ?

ବସ୍ତ୍ର—କ'ଣ କରିବ ? ମଡେଲ ମିଳିଲେ ତ ?

ସୂର୍ଯ୍ୟମଣି – ଏଥର ମଡ଼େଲଟା ତେବେ extraordinary ହୋଇଥିବ ?

ବସ୍ତ୍ର—ନିଃସନ୍ଦେହ ! ନନ୍ଦକିଶୋର ବାବୁଙ୍କର ଖୋଦ୍ ମାନସୀ···

ସୂର୍ଯ୍ୟମଣି—ମାନେ ?

ବସ୍ତ୍ର—ମାନେ, ନନ୍ଦକିଶୋର ବାବୁ ଯେମିତି ଛବି ମୋ ପାଖରୁ ଆଶା କରୁଥିଲେ ଠିକ୍ ସେମିତି ମଡ଼େଲଟିଏ ମିଳିଗଲା । ଆଉ ଛବିଟା କଥା ବିଗ୍ଗର କରିବେ ପ୍ରଦର୍ଶନୀର ଜଜ୍‌ମାନେ ।

ସୂର୍ଯ୍ୟମଣି···ଆଚ୍ଛା, ବସ୍ତ୍ରାଧର !

ବସ୍ତ୍ର—ଆଜ୍ଞା ।

ସୂର୍ଯ୍ୟମଣି—ତୁମକୁ ପରା ଆମ ସହିତ ଯିବାକୁ କହିଥିଲି ।

ବସ୍ତ୍ରାଧର—କେଉଁଠିକି ? ମୋର ତ କାହିଁ କିଛି ମନେ ପଡୁନାହିଁ ?

ସୂର୍ଯ୍ୟମଣି – ନା, କାହିଁକି ମନେ ହେବ ? ଖାଲି କହିଦେଲେ ତ ସବୁ ଠିକ୍ ହୋଇଯିବ ! 'ମୋଗଲ ମହାନାୟକ' ନାଟକ ଲେଖିବା ପାଇଁ ତୁମେ ନନ୍ଦକିଶୋର ବାବୁଙ୍କୁ କହିଥିଲ ପରା ?

ବସ୍ତ୍ର – ହଁ ···ଏଥର ମନେ ପଡ଼ୁଛି·····ଆଲମଗିର ପାହାଡ଼ର ମହାନାୟକଙ୍କ ଗଡ଼ ଦେଖିଯିବାକୁ କହୁଥିଲେ ତ ! ହେଲେ ମୁଁ ସିନା ନ ଯାଇଛି, ଆପଣ ଦୁହେଁ ଦେଖି ଆସିଛନ୍ତି ତ ?

ସୂର୍ଯ୍ୟମଣି – ଆମେ ଆଉ ଦେଖିଲୁ କେଉଁଠ ? ଖରାଦିନେ ଯାଇଥିଲୁ ଯେ ଠିକ୍ ସେଇ ମସ୍‌ଜିଦ ପାଖରେ ନନ୍ଦକିଶୋର ବାବୁଙ୍କୁ ଶୋଷ ଲଗିଲା । ସେ

ଗଲେ ପାଣି ପିଇ । ଠିକ୍ ପାଞ୍ଚ ମିନିଟ୍ ପରେ ଅସ୍ତ ବ୍ୟସ୍ତହୋଇ ଦଉଡ଼ିଛନ୍ତି ? କ'ଣ ନା ବାଘ ବାହାରିଲାଣି । ମୁଁ ବି ବାଘର କୁହାଟ ଶୁଣିଲି । ଆଉ ଗଡ଼ କଏ ନା ଆମେ କଏ ? ସିଧା ତ ଆସି ଘରେ···

ବମ୍ବା—କିଛି ପରବାୟ ନାହିଁ । ସବୁଠିକ୍ ହୋଇଯିବ । କାଲି ଯାଇ ବୁଲି ଆସିବା···

ସୂର୍ଯ୍ୟମଣି—ଦେଖୁଛ ବମ୍ବାଧର, ତୁମେ ମୋତେ ବି ଧନେ ଠିକ୍ ନକରି ଛାଡ଼ିବ ନାହିଁ । ଏଥର କିନ୍ତୁ ମୁଁ ଗଲି ··

(ପ୍ରସ୍ଥାନ)

ବମ୍ବା - କିଛି ପରବାୟ ନାହିଁ । ମୁଁ ବି ଏଇ ପଛେ ପଛେ ଗଲି ।

## ଦୃଶ୍ୟ ତିନି

[ ଗୋଟିଏ ନଦୀ । ନଦୀର ଉଭୟ ପାର୍ଶ୍ୱରେ ସାନ୍ଦ୍ର ବନାନୀ । ଲତାଗୁଳ୍ମର ଘନ ବନ୍ଧନୀ ଭେଦକରି ଶୁଭେ ବର୍ଷାପରେ ଝର୍ଝର ଶବ୍ଦ । ପ୍ରକୃତ ରାତ୍ରିର କୁହେଳି ଭିତରେ ଲୁପ୍ତପ୍ରାୟ । ନଈର ଗୋଟିଏ ପାଖରୁ ଡାକିଲା ବାଟୋଇଟିଏ ନାଉରିଆକୁ । ନାଉରିଆ ନିଜ ଜୀବନକୁ ବିପନ୍ନ କରି ନା' ନେବାକୁ ମନାକଲା । ରାତ୍ରିର ମାୟାତଳେ ଦୁହିଁଙ୍କର ଉକ୍ତି-ପ୍ରତ୍ୟୁକ୍ତି ସଙ୍ଗୀତ ରୂପନେଲା— ]

ବାଟୋଇ—ମେଘ ବରଷଇ ବିଜୁଳି ମାରଇ ପବନ ବହଇ ଖର,
ବାଟ ଚାଲି ଚାଲି ପଡ଼ିଛି ମୁଁ ଥକି ଦୂର ଦେଶେ ମୋର ଘର ।
ଘୋର ଗରଜନେ ଧଗ ଚମକଇ ମେଘ ତ କଳାହାଣ୍ଡିଆ,
ଅନେକ ଦୂରର ବିଦେଶୀ ବାଟୋଇ ନାଆ ଆଣ ନାଉରିଆ ।

ନାଉରିଆ—ଦୁଇକୂଳ ଖାଇ ଉଛୁଳଇ ନଈ ଖରେ ବହୁଅଛି ବାଆ,
ମେଘ ଗରଜଇ ବିଜୁଳି ମାରଇ କେମନ୍ତେ ମୁଁ ନେବି ନାଆ ?
ଭଉଁରି ଖେଳଇ ଫେଣ ଚମକଇ ଘୋର ଗରଜଇ ନଈ,
ଅଜାତ ପାଣିରେ ଆହୁଲି ନ ମାନେ କେମନ୍ତେ ନାବ ନେବଇଁ ?

ବାଟୋଇ—ବହୁତ ଦିନରୁ ଦୂର ପରବାସୀ ମନ ମୋର ଛନ ଛନ ।
ଘରେ ଛନ୍ତି ମୋର ନୟନପିତୁଳୀ ଦେଖିବାକୁ ବଡ଼ ମନ ।

ନାଉରିଆ—ଫୁହାଇ ଫୁହାଇ ମେଘ ବରଷଇ ନଈରେ ତ ଖର ସୁଅ,
କେଉଁ ସାହସରେ ମୁଁ ନାବ ବାହିନେବି ମୁହଁକୁ ନ ଦିଶେ ମୁହଁ !
ଦେଖିବୁ ଘରେ ତୁ ନୟନପିତୁଳୀ ତେଣୁ ଉଛନ୍ନ ତୋ ମନ,
କାହା ଓଳି ତଳେ ଠିଆ ହେବେ ପିଲା ଯେବେ ଯିବ ଏ ଜୀବନ !

ବାଟୋଇ—କୁଳର ଅଙ୍କୁର ନୟନପିତୁଳା ଅଞ୍ଚଳଉଜ୍ଜ୍ୱଳ ମୋହର,
ଏକୋଇର ବଳା ବସିକେଶନ ମୋ କରିଅଛି ତାକୁ ଜର ।
ମାଆ ତା'ର ହୋଇ ବାଇଆଣୀ ପରି ଲେଖି ବିନୟ ପତର,
ବସିଲାଠାବରୁ ଉଠିଆସିବାକୁ ପଠାଇଥିଲେ ଖବର ।
ମହୌଷଧି ନେଇ ତର ତର ହେଇ ନ ମାନି ପାଣି ପବନ,
ଦୂର ଦେଶରୁ ମୁଁ ଯାଉଅଛି ଘରେ ରଖିବି ତା'ର ଜୀବନ ।

ନାଉରିଆ—ବରଷନ୍ତୁ ପଛକେ ଘୋର ବରଷା ରେ ବହୁ ପଛେ ଖର ବାଆ,
ସୁଅ ପାଣି ପଛେ ବହି ନେଇଯାଉ ତଳକୁ ତଳକୁ ନାଆ ।
ପଡ଼ୁ ପଛେ ମୋତେ ଘୋର ବିପଦ ରେ ପାରିକରିଦେବି ତୋତେ,
ଦୟାମୟ ହରି ଦିନେ ଦୟାକରି ଉଦ୍ଧାରିବେ ଭାଇ ମୋତେ ।
ବିପଦ ପଡ଼ିଲେ ବାଟୋଇ ଭାଇ ରେ ସାହା ଯେ ନୋହେ ଆନକୁ
ତାହାରି ଜୀବନ ମରଣ ସମାନ ଧିକ ତାର ଜୀବନକୁ ।

( ରଙ୍ଗମଞ୍ଚରେ ଆଲୋକ କ୍ରମେ କ୍ରମେ ଲିଭି ଆସି ପୁଣି ହଠାତ୍ ଜଳି ଉଠିଲା । ଦେଖାଗଲା ଚନ୍ଦ୍ରୋତ୍ପଳା ନଦୀକୂଳରେ ବସିଛନ୍ତି ନନ୍ଦକିଶୋର ଓ ଗଙ୍ଗାଧର ମେହେର । )

ଗଙ୍ଗାଧର—ଅପୂର୍ବ, ଅପୂର୍ବ ଆପଣଙ୍କର ଏଇ ଶିଶୁର ଜନ କବିତା ନନ୍ଦକିଶୋର ବାବୁ ! ଆପଣଙ୍କ ଲେଖନୀ ଯେ ଦିନେ ଏପରି କବିତା ସୃଷ୍ଟି କରିବ, ଏ ଧାରଣା ମୋର ବହୁଦିନରୁ ଥିଲା । ଏଇ 'ବାଟୋଇ ନାଉରିଆ' କବିତାଟିରେ ଭାବ ଯେମିତି ସୁନ୍ଦର ପ୍ରକାଶ ବି ସେମିତି ସରଳ ···

ନନ୍ଦ—ପରମଗୁରୁ ମଧୁବାବୁଙ୍କ ଆଶୀର୍ବାଦର ଫଳ ଏ; ଗଙ୍ଗାଧର ବାବୁ ! ନୋହିଲେ ଗୋଟିଏ ଦିନରେ କ'ଣ ମୁଁ ଏଇ 'ନାନାବାୟା ଗୀତ' ଲେଖି ପାରିଥା'ନ୍ତି ?

ଗଙ୍ଗାଧର—ଆଶ୍ଚର୍ଯ୍ୟ, ଗୋଟିଏ ଦିନରେ ଆପଣ ଲେଖିପାରିଲେ ଏପରି କବିତା-ଗୁଚ୍ଛଟିଏ ?

ନନ୍ଦ—ପୂରା ଗୋଟିଏ ଦିନ ବି ନୁହେଁ । ସବୁ କାମ ଛାଡ଼ି ସକାଳ ଛ' ଟାରୁ ବସିଲି ଯେ ବେଳ ବାରଟା ସରିକି ଲେଖା ସରିଲା ।

ଗଙ୍ଗା—ଧନ୍ୟ ଆପଣଙ୍କର କବିତ୍ୱ ! 'ପଲ୍ଲୀଚିତ୍ର' ଆଉ ଏଇ 'ନାନାବାୟା ଗୀତ' ପଢ଼ିଲେ ଆପଣଙ୍କୁ କେବଳ କବି ବୋଲି କହିବାକୁ ସାହସ ହୁଏନା ନନ୍ଦକିଶୋର ବାବୁ, ହୃଦୟରୁ ପଲ୍ଲୀକବି ନାମଟା ଆପେ ଆପେ ବାହାରି ଆସେ ।

ନନ୍ଦ—କିନ୍ତୁ ଆପଣଙ୍କର କୀଚକ ବଧରେ ତ ପ୍ରକୃତିର କିଛି କମ୍ ବର୍ଣ୍ଣାଢ୍ୟ ଚିତ୍ର ଦେଇନାହାନ୍ତି ଆପଣ—
ପ୍ରକୃତି ଯତନରେ ଖଣ୍ଡ ଖଣ୍ଡ କରି ପ୍ରଭାକର ମହାମଣି,
ନିଜ ଅବୟବ ଅଲଙ୍କୃତ କଲା ଗଢ଼ି ତାରା ନିଶାମଣି ।
ଜ୍ୟୋତ୍ସ୍ନା ଉଦ୍ଭାସିତ ତାରାବୃତ ନୀଳ ବିହାୟସେ ସୁଧାକର,
କ୍ଷୀରାର୍ଣ୍ଣବ-ଶେଷ-ମଣି ମଧ୍ୟେ ବିଷ୍ଣୁ କୌସ୍ତୁଭ ବଡ଼ ସୁନ୍ଦର ।
ଯାନୁ ଗଭସ୍ତିକ ଆଉଟି ଢାଳିଲା ପ୍ରଦୀପ ପ୍ରସୂନ ଛାଞ୍ଚେ, ... ଏଇମିତି କେତେକ'ଣ....

ଗଙ୍ଗାଧର—ଅସମ୍ଭବ, ଅସମ୍ଭବ ନନ୍ଦକିଶୋର ବାବୁ ! 'ବାଛୋଇ ଓ ନାଉରିଆ'ରେ ଆପଣ ଯେଉଁଭଳି ଭାଷାରେ ପ୍ରକୃତ ଆଉ ଭାବକୁ ପ୍ରକାଶ କରିଛନ୍ତି ତା' ସହିତ ''କୀଚକ ବଧ''ର ଏ କବିତାର ତୁଳନା ହୋଇ-ପାରେନା । ଓଡ଼ିଆର ଅତି ନିଜସ୍ୱ ପୁଣି ଅତି ଜଣାଶୁଣା ଗୀତିକବିତା, ଆଉ ପ୍ରବାଦଗୁଡ଼ିକୁ ନେଇ ଆପଣ ଏ ଯେଉଁ କବିତା ଲେଖିଲେ ସେଥିରେ ଓଡ଼ିଆ ସାହିତ୍ୟର ଗୋଟାଏ ନବ ଯୁଗର ସୃଷ୍ଟି କଲେ ଆପଣ....

ନନ୍ଦ – କିନ୍ତୁ ଆପଣ ଏକଥା ଭୁଲି ଯାଉଛନ୍ତି ଯେ ସ୍କୁଲ କଲେଜର ମାଟି ପର୍ଯ୍ୟନ୍ତ ନ ମାଡ଼ି ଆପଣ ଯେଉଁ କାବ୍ୟ ଲେଖିଲେ ସେ କାବ୍ୟ ଓଡ଼ିଆ ସାହିତ୍ୟରେ ଚିର ଭାସ୍ୱର ହୋଇ ରହିବ ।

ଗଙ୍ଗା – ସେଇଥିପାଇଁ ତ ମୋର 'ପ୍ରଣୟ ବଲ୍ଲରୀ' ଅପୂର୍ଣ୍ଣ ରହିଛି ଆଉ 'ଉତ୍ତର ରାମ ଚରିତ' ର ମାୟାରେ ପଡ଼ି ମୁଁ ଯେଉଁ ତପସ୍ୱିନୀର ସ୍ୱପ୍ନ ଦେଖୁଥିଲି ସେଇ 'ତପସ୍ୱିନୀ' କେବଳ ସ୍ୱପ୍ନରେ ହିଁ ରହିଗଲା । .. ବାସ୍ତବକୁ ଆଣିବାର କଳ୍ପନା ବି କରି ପାରିଲି ନାହିଁ···

( ଦୁଃଖରେ ଭାଙ୍ଗି ପଡ଼ିଲେ )

ନନ୍ଦ—ଆପଣ ନିଜେ ଭୁଲ ବୁଝୁଛନ୍ତି ଗଙ୍ଗାଧର ବାବୁ ! ଆପଣଙ୍କର ଶିକ୍ଷା ନାହିଁ, ଦୀକ୍ଷା ନାହିଁ ସତ । ତଥାପି ଆପଣଙ୍କ କବିତା ସ୍ୱଭାବ-ମାଧୁର୍ଯ୍ୟ ଦୃଷ୍ଟି ଆପଣଙ୍କୁ 'ସ୍ୱଭାବ-କବି' କହିବାକୁ ସ୍ୱତଃ ଇଚ୍ଛା ହୁଏ....କାଳିଦାସଙ୍କର ''ଅଭିଜ୍ଞାନ ଶକୁନ୍ତଳା''ର କଥାବସ୍ତୁ ଆପଣଙ୍କୁ ମୁଁ ଅନେକଥର କହିଛି ··ଆଉ ତା'ରି ଛାୟାରେ 'ପ୍ରଣୟ ବଲ୍ଲରୀ'କୁ ପୁଷ୍ପିତା କରିବା ପାଇଁ ଅନୁରୋଧ କରିଛି ବହୁବାର । ଗଙ୍ଗାଧର ବାବୁ, ଆପଣଙ୍କର ପ୍ରାଣ କବି-ପ୍ରାଣ । ଭାବୁକର ଅନ୍ତର ନେଇ ଯଦି ଆପଣ ହତୋତ୍ସାହ ହୁଅନ୍ତି ତେବେ କହିଲେ ଓଡ଼ିଆ ସାହିତ୍ୟର କି ଦଶା ହେବ !

ଗଙ୍ଗା – ସବୁ ଜାଣି ଶୁଣି ବି ମୁଁ ନୀରବ ନନ୍ଦକିଶୋର ବାବୁ ! ରାଧାନାଥବାବୁ, ମଧୁବାବୁ, ଗୌରୀବାବୁ ଆଉ ଆପଣମାନେ ନଥିଲେ ଓଡ଼ିଆ ସାହିତ୍ୟ ଚିରଦିନ ପାଇଁ ବିଦାୟ ନେଇଥା'ନ୍ତା । ଆଉ ତାର ସ୍ଥାନ ଦଖଲ କରି-ଥା'ନ୍ତା ବଙ୍ଗ ସାହିତ୍ୟ । କିନ୍ତୁ କ'ଣ କରିବ ମୁଁ ? ଦୁନିଆର ଆଖିରେ ମୁଁ ଆଜି କେତେ ଶ୍ରେଷ୍ଠ ? ସାମାନ୍ୟ ଗୋଟାଏ ଲୁଗାବୁଣା ତନ୍ତୀକୁ ଆଜିର ସଭ୍ୟସମାଜ ସାହିତ୍ୟସାଧକ ଭାବରେ କ'ଣ କେବେ ଗ୍ରହଣ କରିପାରେ ।

ନନ୍ଦ – ଏ ଧାରଣା ଆପଣଙ୍କର ଅମୂଳକ ଗଙ୍ଗାଧର ବାବୁ ! ଦୁନିଆର ଗତି ସବୁଦିନେ ସମାନ ନୁହେଁ । ଯେଉଁ ଶ୍ରେଣୀକୁ ସମାଜ ଆଜି ହୀନଚକ୍ଷୁରେ

ଦେଖୁଛି ସେଇ ଶ୍ରେଣୀ ଦିନେ ଦେଶର ମାନଦଣ୍ଡ ହୋଇ ଠିଆ ହେବ···
ଆପଣ ବିଶ୍ୱାସ କରନ୍ତୁ ।

ଗଙ୍ଗା—ମୁଁ ବୁଝୁଛି । ଆପଣଙ୍କ ଯୋଗୁ ଆଜି ଲୋକମାନଙ୍କର ଧାରଣା ମୋ ଉପରେ ବଦଳିଛି । କିନ୍ତୁ ସବୁଦିନେ ତ ଆଉ ଆପଣ ଏଠି ରହିବେ ନାହିଁ । ମାସକ ପରେ ହୁଏତ ଆପଣ ବଦଳି ହୋଇଯିବେ ଆଉ କେଉଁଠିକୁ । କିନ୍ତୁ ଆପଣଙ୍କର ପ୍ରେରଣା ମୁଁ କଦାପି ଭୁଲିପାରିବ ନାହିଁ····

ନନ୍ଦ—ଆପଣଙ୍କର 'ପ୍ରଣୟ ବଲ୍ଲରୀ' ପୁଷ୍ପିତା ହେବ ଆଉ ତା'ର ଫଳ ନାଗୁଛି ମୁଁ ସମ୍ବଲପୁରରୁ ଯାଇ ପାରୁନାହିଁ ଗଙ୍ଗାଧର ବାବୁ । ଆପଣ ସେଥିପାଇଁ ବ୍ୟସ୍ତ ହେବେ ନାହିଁ । ଯେଉଁ 'ତପସ୍ୱିନୀ'କୁ ଆପଣ ସ୍ୱପ୍ନ ଦେଖୁଥିଲେ ତାକୁ ବାସ୍ତବ ରୂପ ଦେଇ "ମନସ୍ୱିନୀ" କରି ଗଢ଼ିବେ ଏ ବିଶ୍ୱାସ ମୋର ଅଛି ।

ଗଙ୍ଗା—ସେଇ ବିଶ୍ୱାସ ଉପରେ ନିର୍ଭର କରି ମୁଁ ଆଜି ଏତେଦୂର ଆସି ପାରିଛି । ମୋ ଜନ୍ମଭୂମି ଉପରେ ମୋର ଯଥେଷ୍ଟ ବିଶ୍ୱାସ ରହିଛି ।

ନନ୍ଦ—ସେଇ ଜନ୍ମଭୂମି ଉପରେ ବିଶ୍ୱାସ ରଖି ଆପଣଙ୍କୁ ମୋର ଆଉ ଗୋଟିଏ ଅନୁରୋଧ ରକ୍ଷା କରିବାକୁ ହେବ ଗଙ୍ଗାଧର ବାବୁ !

ଗଙ୍ଗା—ଅନୁରୋଧ ନୁହେଁ, ବରଂ ଆଦେଶ ବୋଲି କହନ୍ତୁ···

ନନ୍ଦ—'ବେଦବ୍ୟାସ' 'ଗୃହସ୍ଥ ରଜନୀ' ସହିତ ଆପଣଙ୍କର କେତୋଟି କ୍ଷୁଦ୍ର କବିତା ଗୁଡ଼ିକର ଗୋଟିଏ କବିତା ସଙ୍କଳନ କରନ୍ତୁ ଆଉ ତା'ର ନାମ ରଖନ୍ତୁ 'କବିତା କଲ୍ଲୋଳ' । ବନ୍ଧୁ ହିସାବରେ ମୋର ଏ ଅନୁରୋଧ ଟିକକ ରଖିବେ ବୋଲି ମୋର ଆଶା —

ଗଙ୍ଗା—ମାନିଲି କିନ୍ତୁ ଗୋଟାଏ ସର୍ତ୍ତରେ । ସମ୍ବଲପୁର ରହଣିର ସ୍ମୃତି ପାଇଁ ମୁଁ ଆପଣଙ୍କଠାରୁ କେତୋଟି କବିତା ଦାବୀ କରୁଛି ।

ନନ୍ଦ—(ହସି) କି କବିତା ମୁଁ ଆଉ ଲେଖିବି ଗଙ୍ଗାଧର ବାବୁ ·

ଗଙ୍ଗା—ନିକଟରେ ଚନ୍ଦ୍ରୋତ୍ପଳା ନଦୀ । ଦୂରରେ ଅସ୍ତମାନ ସୂର୍ଯ୍ୟ । ଆସନ୍ନ ସନ୍ଧ୍ୟା । ହୋଇ ସେ ପାଖରେ ପର ଆପଣା ନ ବାଛି ଦୁଇଟି ପଥିକ ଗପେଷେଇ କରୁଛନ୍ତି ଏସବୁ କ'ଣ କବିତା ପାଇଁ ଯଥେଷ୍ଟ ନୁହେଁ··· ?

ନନ୍ଦ—(ହସି) ହେଲା ତେବେ । ଆଜିର ଏଇ ସ୍ମୃତି ରକ୍ଷା କରି ମୁଁ ଆପଣଙ୍କୁ ଭେଟି ଦେବି—'ଚନ୍ଦ୍ରୋତ୍ପଳା କୂଳେ ସଂଧ୍ୟା'···

(ଦୁହେଁ ଉଠିଲେ)

ଗଙ୍ଗା – ଉଠନ୍ତୁ ତେବେ ଆଜ୍ଞା । ବସାରେ ପହଞ୍ଚୁ ପହଞ୍ଚୁ ପୁଣି ସନ୍ଧ୍ୟା ହୋଇଯିବ · · · ହଁ ନନ୍ଦକିଶୋର ବାବୁ ! ଆପଣ କହୁଥିଲେ ପଶ୍ଚି ସମ୍ବଲପୁରର ଲୋକନୃତ୍ୟ ଦେଖିବାପାଇଁ ? ସେ ସବୁର ବନ୍ଦୋବସ୍ତ ମୁଁ କରିଛି । ବାରିପଦାର ଛଉନୃତ୍ୟ ପରି ଏ ନୃତ୍ୟଟି ମଧ୍ୟ ଓଡ଼ିଶାର କଳାପ୍ରେମର ପରିଚୟ ଦିଏ । ସ୍କୁଲର ସେକ୍ରେଟେରୀ କାଲି ସ୍କୁଲ ହତାରେ ଏଇ ଲୋକନୃତ୍ୟର ଆୟୋଜନ କରିଛନ୍ତି ବୋଲି ଆପଣ ବୋଧହୁଏ ଜାଣନ୍ତି ।

( ଯାଉଁ ଯାଉଁ )

ନନ୍ଦ—ହଁ, ସେକ୍ରେଟେରୀ ମୋତେ ଆଜି ନିମନ୍ତ୍ରଣ କରି ଯାଇଛନ୍ତି । ସତରେ ଗଙ୍ଗାଧର ବାବୁ, ବହୁଦିନରୁ ଓଡ଼ିଶାର ଏ କଳା ପ୍ରତି ମୋର ଯଥେଷ୍ଟ ଆଗ୍ରହ ରହିଛି । ଭାବି ନ ଥିଲି ଏତେ ଶୀଘ୍ର ସେ ସୁଯୋଗ ମିଳିବ ବୋଲି····ମୁଁ ଆପଣମାନଙ୍କର ଋଣ ଶୁଝି ପାରିବି ନାହିଁ·····

**ପଟ କ୍ଷେପ**

## ଦୃଶ୍ୟ ଚାରି

[ସମ୍ବଲପୁର ସ୍କୁଲର ହତା । ସନ୍ଧ୍ୟାର କିଛି ସମୟ ପରେ । ସମ୍ବଲପୁରର ଲୋକନୃତ୍ୟ କାର୍ଯ୍ୟକ୍ରମ ଚାଲିଛି । ଦର୍ଶକ ଥିଲେ ସେକ୍ରେଟେରି, ଗଙ୍ଗାଧର ମେହେର ଏବଂ ନନ୍ଦକିଶୋର ବଳ ଓ ଆଉ କେତେ ଜଣ ଭଦ୍ରବ୍ୟକ୍ତି । ନୃତ୍ୟ ସରିଲା ପରେ ଭଦ୍ରବ୍ୟକ୍ତିମାନଙ୍କ ସହିତ ସେକ୍ରେଟେରି ବାହାରକୁ ଗଲେ ।]

ନନ୍ଦ—(ଉଚ୍ଛ୍ୱସିତ ପ୍ରଶଂସାରେ) ବାସ୍ତବିକ ଅପୂର୍ବ ଏ ନୃତ୍ୟ ! ଉତ୍କଳର କଳା ଯୁଗେ ଯୁଗେ ଅମର···ଆଉ ତାକୁ ଅମର କରି ରଖିଛନ୍ତି ଏଇ କଳା-କାଙ୍ଗାଳ ଓଡ଼ିଆମାନେ ।

ଗଙ୍ଗାଧର – କଳାର ଆଦର କିନ୍ତୁ ଦିନକୁଦିନ କମିଯାଉଛି ନନ୍ଦକିଶୋର ବାବୁ ! ମଣିଷ ଯେତେ ବିଜ୍ଞାନ ପଛରେ ଧାଉଁଛି କଳା ଉପରୁ ତା'ର ସେତିକି ଆଦର କମିଆସୁଛି ।

ନନ୍ଦ—ତଥାପି କୁଳବୃଦ୍ଧ ମଧୁବାବୁ ବଞ୍ଚି ଥାଉଁ ଥାଉଁ ଓଡ଼ିଆ ଜାତିର ମୃତ୍ୟୁ ନହିଁବ ନାହିଁ । ଆଉ ମନେ ରଖନ୍ତୁ ଗଙ୍ଗାଧର ବାବୁ, ତାଙ୍କର ଉଦ୍ୟମ ନିଶ୍ଚୟ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳକୁ ଏକତ୍ରିତ କରିବ । ଏଥିରେ ସନ୍ଦେହ ନାହିଁ ।

ଗଙ୍ଗାଧର—ଏଥିରେ ପଣ୍ଡିତ ଦାଶଙ୍କ ଉଦ୍ୟମକୁ ମଧ୍ୟ ସ୍ୱାଗତ କରିବାକୁ ହେବ ନନ୍ଦକିଶୋର ବାବୁ !

ନନ୍ଦ—ନିଶ୍ଚୟ ! ଓଡ଼ିଶାରେ ଅସହଯୋଗ ଆନ୍ଦୋଳନର ଯେଉଁ ମଞ୍ଜି ପଣ୍ଡିତ ଦାଶ ପୋତିଲେ ସେ ମଞ୍ଜିର ଗଛ ସାରା ଓଡ଼ିଶାକୁ ଶୀତଳ କରିବ ଗଙ୍ଗାଧର ବାବୁ ! ଏକନିଷ୍ଠ, ନିଃସ୍ୱାର୍ଥ ଜନସେବକ ହିସାବରେ ସେ ଆମର ଆଜି ବରେଣ୍ୟ । ଆମର ସାହିତ୍ୟ ପାଇଁ ଆମେ ରାଧାନାଥ, ଫକୀରମୋହନ ଏବଂ ମଧୁସୂଦନଙ୍କ ନିକଟରେ ଯେତିକି ଋଣୀ, ଆମର ଜାତି ପାଇଁ ଆମେ ଦୁଇ ଦାସ ମହୋଦୟଙ୍କ ନିକଟରେ ତାଠୁଁ ଅଧିକ ଋଣୀ । ସରକାରୀ କର୍ମଚାରୀ ହେଲେ ବି ମୋ ସହିତ ପଣ୍ଡିତ ଦାଶଙ୍କର ଅନେକଥର ସାକ୍ଷାତ ହୋଇଛି । ପ୍ରତ୍ୟେକ ଥର ମୁଁ ଦେଖିଛି ତାଙ୍କ ଆଖିରେ ଲୁହ···ଓଡ଼ିଆ ଜାତି ପାଇଁ ସବୁଥର ମୁଁ ତାଙ୍କର ହୃଦୟରେ ଅନୁଭବ କରିଛି ବେଦନା··· ମନେହୁଏ ପାଦତଳେ ତାଙ୍କର ଲୋଟିଯିବା ପାଇଁ···ଏଇ ସରକାରୀ

ନୌକରୀକୁ ପଦାଘାତ କରିବା ପାଇଁ···କିନ୍ତୁ କିନ୍ତୁ ମୁଁ ନିରୁପାୟ ଗଙ୍ଗାଧର ବାବୁ ! ତାଙ୍କପରି ନିଃସ୍ୱାର୍ଥ ଦେଶସେବକ ମୁଁ ହୋଇପାରିନି କି ପାରିବି ନାହିଁ ··

(ସେକ୍ରେଟେରୀ ଆସିଲେ)

ସେକ୍ରେଟେରୀ—ଆସନ୍ତୁ ନନ୍ଦକିଶୋର ବାବୁ ! ସାମାନ୍ୟ ଜଳଯୋଗର ବ୍ୟବସ୍ଥା ହୋଇଛି ଆପଣମାନଙ୍କ ପାଇଁ....ସମସ୍ତେ ଅପେକ୍ଷା କରିଛନ୍ତି —

ନନ୍ଦ—ଆହା, ଏତେ କଷ୍ଟ କଲେ କାହିଁକି ଆପଣ ? ମୋ ପାଇଁ ଯେତିକି କଷ୍ଟ ସହୁଛନ୍ତି ସେତିକି ଶୁଝିବା କଷ୍ଟ...ପୁଣି କାହିଁକି ? (ହସି)

ଗଙ୍ଗାଧର—ତଥାପି·····ଶିଷ୍ଟାଗ୍ରହ ତ ପୁଣି ଅଛି···ଏ ଜନ୍ମରେ ସବୁତକ ଋଣ ଶୁଝି ଦେଲେ ପୁଣି ଜନ୍ମଜନ୍ମାନ୍ତରର ସମ୍ପର୍କ ତୁଟିଯିବ ଯେ....

(ସମସ୍ତେ ହସିଲେ)

ନନ୍ଦ—ଆହା···କି କଥା ଆପଣ ନ କହିଲେ ଗଙ୍ଗାଧର ବାବୁ ! ଜନ୍ମଜନ୍ମାନ୍ତରର ସମ୍ପର୍କ··· ? ସତେ ଆପଣମାନେ ମୋତେ ବାନ୍ଧି ପକେଇଛନ୍ତି ଏଇ କେଇଦିନ ଭିତରେ···(ଠିଆ ହେଲେ) ଚାଲନ୍ତୁ···

ଗଙ୍ଗାଧର – ଆପଣ ଆଗ ନା··· (ସମସ୍ତେ ଯାଉଁ ଯାଉଁ) ଆମେ ତ ଏଠି ସବୁଦିନିଆ····

ପଟକ୍ଷେପ

## ଦୃଶ୍ୟ ପାଞ୍ଚ

[କଟକ ଜଜ୍‌କୋର୍ଟ ନିକଟସ୍ଥ ରାସ୍ତା । ଓଡ଼ିଆ ପୋଷାକରେ ପଶିଆସିଲେ ଗୋପାଳ ପ୍ରହରାଜ । ପଛେ ପଛେ ଜଣେ ମହୁକାଲ ]

ଗୋପାଳ—ନାଃ, ଆଉ ହବନି ମଦନବାବୁ ! ଏଥର ଦେଖୁଛି ଓକିଲାତିଟାକୁ ଛାଡ଼ିବାକୁ ପଡ଼ିବ । ଆଉ କେତେଦିନ ଏମିତି ଚଳିବ ?

ମଦନ – ସେମିତି କହିଲେ ଆପଣଙ୍କୁ ଛାଡ଼ୁଛି କିଏ ଯେ ?

ଗୋପାଳ – ନାଇଁ, ତୁମେ ଏଥର ଛାଡ଼ । ଦେଖୁଛ ତ ମୋ ଅବସ୍ଥା । କଟକରେ ବସାକରି ଯଦି ରହିଲି ତେଣେ ଘରେ କୁଲଠାରୁ ଗୁଞ୍ଝୁଣୀ ପର୍ଯ୍ୟନ୍ତ ହରଣଚାଲ ହେଲା । ଘରୁ ଯିବା ଆସିବା କଲି ତ, କଟକରେ ମହୁକାଲଙ୍କ ଦେଖା ମିଳିବା କାଠିକର ପାଠ । ଦେଖିଲାବେଳକୁ ମୋ ସିରସ୍ତାରେ ବସ୍ତାନି ଉପରେ ଧୂଳି ପଡ଼ିଲାଣି, ଦେଖା ନ ପାଇ ମହୁକାଲ ଗୋଟିଏ ଗୋଟିଏ ଅନ୍ୟ ବାଟ ଦେଖିଲେଣି । ଏଥିରେ କ'ଣ କରିବି କହିଲ । ନା ଘର ସମାଳୁଛି ନା ଓକିଲାତି ? ଦୁଇଁ ମଙ୍ଗରେ ଗୋଡ଼ ଦେଇ ଏଣେ ସାଙ୍ଗସାଥୀମାନଙ୍କୁ ଭୁଲୁଛି ତ ତେଣେ ଗାଁ ବାଲାଙ୍କ ସହାନୁଭୂତି ନଷ୍ଟ । ନାଃ, ଏଥର ଓକିଲାତି ଛାଡ଼ି ଗାଁରେ ରହି ଗୃହବାସ ଦେଖିବାକୁ ହେବ । ବେଶ୍ ସୁଖରେ ଚଳିଯାଇ ପାରିବ । ଏ ବ୍ୟବସ୍ଥା ସବୁ ମୋର ଦୂରରୁ ଜୁହାର......

ମଦନ – (ବିକଳ ହୋଇ) ଆଜ୍ଞା, ମୋ କେଶ୍‌ଟାକୁ ନ ଦେଖିଲେ ଭାସିଗଲି ।

ଗୋପାଳ—ତୁମେ ଭାସିଯିବା ଆଗରୁ ମୋତେ ଆଗେ ସୁଅ ମୁହଁରୁ ରଖ, ମଦନ ! ସରକାରଙ୍କୁ କେ ଫଣ୍ଡ୍ ମାଗ୍ ଏ ଡିଭିଜନ୍ ଅଫ୍ ଲେବର୍ ଚଳେଇବାକୁ ତାଙ୍କୁ କିଏ ବୁଦ୍ଧି ଦେଇଛି । ବାରନାତି ତେରବୁଲିଙ୍କୁ ମିଶେଇ ଦେଲେ ଯେ ଘାଣ୍ଟି ହେବା, ସେଥିରୁ କିଏ କେଉଁ କାମର ବାଛିବା ମୁସ୍କିଲ୍....

ମଦନ—ଆଜ୍ଞା ସତ କହୁଛନ୍ତି....ହଳ କରିବାକୁ ଏବେ ଗାଁରେ ମୂଲିଆଟିଏ ମିଳୁ ନାହାନ୍ତି । କିଏ ରେଙ୍ଗୁନ୍, କିଏ କାଳମାଟି, କିଏ କଲିକତା, ଏମିତି ସବୁ ପଳେଇଛନ୍ତି ।

ଗୋପାଳ – କହୁଛୁ ପରା ସେଇଥିପାଇଁ ମୋର ଏ ଅବସ୍ଥା । ହଳ ଚଷିବାକୁ ଲୋକ ନାହାନ୍ତି ଯେ ଶେଷରେ ପୁଣି ନିଜକୁ ଲଙ୍ଗଳ ଧରିବାକୁ ପଡ଼ିବ । ବ୍ରାହ୍ମଣ ଯାଇ ଟେକ୍ସ୍ଟାଇଲ୍ ମିଲ୍‌ରେ ଲୁଗା ବୁଣିଲେଣି ତ, ତେଲି ତେଲଘଣା ଛାଡ଼ି ଦଉଡ଼ୁଛି ଚଟକଳକୁ । ଆଚ୍ଛା ସହରୀ ନିଶା ଧରିଲା ଯେ ଗାଁ ଭିତରେ ଶିଆଳ ଭୁକିବାକୁ ଲାଗିଲେଣି...ଏଇ ତ ଆମ ଘରର ହାଲଚାଲ...ଏଥିରେ କେମିତି ମୁଁ ଓକିଲାତି କରିବି କହ ତ ? ତୁମର କେଶ ମୋଟେ ପାଞ୍ଚଦିନ ବାକି, ଅଥଚ ଆଇନ ବହି ପଢ଼ା ଛାଡ଼ି ବିଲରେ ଧାନ ବୁଣୁଛି ..

ମଦନ—ତାହିଁକି ଆଜ୍ଞା, ଆପଣଙ୍କ ପରି ଲୋକ ଶେଷକୁ ..

ଗୋପାଳ—କ'ଣ କରିବି ? ଗାଁରେ ଲୋକ ନାହାନ୍ତି...ଖାଲି ଯାହା ଦରବୁଢ଼ୀ, ମାଇପେ ଆଉ ଲଙ୍ଗଳା ଛୁଆ କେଇଟା ଏପାଖ ସେପାଖ ଦୌଡ଼ୁଛନ୍ତି । ତାଙ୍କୁ ନେଇ କଣ କାମ କରିବି ?

(ଚାଲି ଯାଉଥିଲେ)

ମଦନ (ଅନୁନୟ ଭଙ୍ଗୀରେ) ଆଜ୍ଞା, ମୋ କଥା ଟିକେ ବିଚାର କରନ୍ତୁ । କେଶ୍‌ଟା ଜମା ପାଞ୍ଚଦିନ ରହିଲା ଆଉ ..

ଗୋପାଳ - (ବିରକ୍ତିରେ) ହେଲା ଏବେ ତୁମେ ମୋତେ କାଲି ଦେଖାକର ମଦନ ! ମୋର ଆଉ ସମୟ ନାହିଁ ।

ମଦନ—ଆପଣଙ୍କ ଦୟା ନ ହେଲେ ଭାସିଯିବି........

(ଲୋକଟି ନମସ୍କାର କରି ଚାଲିଗଲା)

ଗୋପାଳ—ଭାସିବନି ହେ ଭାସିବ । ଯାଅ ଏଥର..ଓଃ ରକ୍ଷେଇ ଦେଲେନି ଏଗୁଡ଼ା....(ଚାଲି ଯାଉଥିଲେ ବିପରୀତ ଦିଗରୁ ପ୍ରବେଶ କଲେ ଅଭିରାମ ଭଞ୍ଜ । ସେ ଖୁବ୍ ଦୁର୍ବଳ) ଆରେ, ଆରେ ଭଞ୍ଜ ଯେ...ନମସ୍କାର, ନମସ୍କାର....ଭାରି ତ କଣ ମୋଟା ହୋଇ ଯାଇଛନ୍ତି ।

ଅଭିରାମ—(ନମସ୍କାର କରି ନୀରସ ମୁଖରେ ବହୁଦିନ ପରେ ଦେଖା.... ଗୋପାଳ ବାବୁ ଏଥର ଭାଷାବିତ୍ 'ଆଇନଜ୍ଞ । ସେ ବା କାହିଁକି ଆଉ ଅଭିରାମ ଭଞ୍ଜ ପରି ଗୋଟାଏ ଅଧମର ଖବର ରଖିବାକୁ ଯିବେ ?

ଗୋପାଳ—କୁହନ୍ତୁ ନାହିଁ ଅଭିରାମ ବାବୁ ସେ କଥା । ଆପଣ ତ ଦେଖିଛନ୍ତି ଭାଷାକୋଷ ଲେଖିଲା ବେଳେ କି ଅବସ୍ଥାଟା ନ ହୋଇଥିଲା ? ଏବେ ତତୋଽଧିକ ଦୁରବସ୍ଥା....ସାହିତ୍ୟ ଚର୍ଚ୍ଚା ତ କେଉଁଦିନୁ ଛାଡ଼ିଲିଣି.... ଉଦର ଚର୍ଚ୍ଚା କରିବାକୁ ମଧ୍ୟ ବେଳ ମିଳୁ ନାହିଁ ।

ଅଭିରାମ—ହେଲେ ଗୋପାଳ ବାବୁ, ଭାଷାକୋଷ ଲେଖି ଆପଣଙ୍କ ନାମ ରଖିଲେ; କିନ୍ତୁ ଇତିହାସ ଲେଖି ନାମ କମେଇବା ଆଉ ମୋ ଭାଗ୍ୟରେ ନାହିଁ ।

ଗୋପାଳ – କାହିଁକି, ଆପଣ ତ ଇତିହାସ ଲେଖି ସାରିଛନ୍ତି ।

ଅଭିରାମ—ସ୍ୱାସ୍ଥ୍ୟ ମୋର ନିତାନ୍ତ ଖରାପ ହୋଇ ଯାଇଥିଲା । ଏଇ ଦୁଇ ତିନିଦିନ ହେଲା ଟିକିଏ ବୁଲି ପାରୁଛି । ଭାବିଥିଲି ବୁଲିଯିବ ··ଭାଗ୍ୟକୁ ଆପଣଙ୍କ ସହିତ ଦେଖା....ଆଉ ଜାଣିଥିବେ ତ କାମପାଳ ବାବୁଙ୍କ କଥା·····

ଗୋପାଳ—ସତେ ଅଭିରାମ ବାବୁ, ଘଟଣାଟା ମୋତେ କାହିଁକି ଦୁର୍ବୋଧ ଜଣାପଡ଼ୁଛି । ତାଙ୍କ ପରି ସୁସ୍ଥ ମସ୍ତିଷ୍କ ଲୋକର ପାଗଳ ହେବାଟା···

ଅଭିରାମ—ସୁସ୍ଥ ମସ୍ତିଷ୍କ ହେଲେ ମଧ୍ୟ ମାନସିକ ବିକାରକୁ ତ ଆଉ ଜୟ କରି ପାରିବେ ନାହିଁ । ଓକିଲାତି କରି ଚିନ୍ତାଗ୍ରସ୍ତ ହେଲେ, ହେଲେ ଅସଲ କଥାଟା କ'ଣ ଜାଣନ୍ତି ?

ଗୋପାଳ—କ'ଣ ନନ୍ଦକିଶୋର ବାବୁଙ୍କ ପ୍ରତି ବିଦ୍ୱେଷ ?

ଅଭିରାମ—ହଁ, ମୋର ସେଇ ମତ ।

ଗୋପାଳ—କିନ୍ତୁ ତାଙ୍କର 'ବସନ୍ତ ଲତିକା' ନାଟକର ବେଶ୍ ପ୍ରଶଂସା ତ କରିଗଲା । ସେଥିରେ ପୁଣି ଏପରି ଭାବରେ ଡିସାପଏଣ୍ଟେଡ୍ ହେବାଟା କ'ଣ ଅସ୍ୱାଭାବିକ ନୁହେଁ ।

ଅଭିରାମ—କିନ୍ତୁ ମୁଁ ଯାହା ଶୁଣିଲି ସେଟା ମିଛ ହୋଇ ନ ପାରେ····ପାଗଳ ହେବାର ପୂର୍ବ ଅବସ୍ଥାରେ ବାରମ୍ବାର ସେ 'ପଲ୍ଲୀଚିତ୍ର' 'ପଲ୍ଲୀଚିତ୍ର' ବୋଲି ଚିତ୍କାର କରୁଥିଲେ । ତା ଛଡ଼ା କେତେକ ଡାକ୍ତରଙ୍କର ମତ ଯେ His madness is due to some disappointment.

ଗୋପାଳ – ହୁଁ ···(ଚିନ୍ତାକରି) କଥାଟା ନିହାତି incredible ନୁହେଁ ତଥାପି ଅଭିରାମ ବାବୁ, ତାଙ୍କ କଥା ମନେ ପଡ଼ିଲେ ବହୁତ ଦୁଃଖ ହୁଏ । ପିଲାବେଳର ବନ୍ଧୁ ଆମେ ତିନିଜଣ । ସେଥିରୁ ଜଣକର ଏ ଦଶା···କି ଶୋଚନୀୟ ପରିସ୍ଥିତି କହିଲେ ?

ଅଭିରାମ – ମୋର ମଧ୍ୟ ଆଶା ଛୁଡ଼ିଲୁ ଗୋପାଳ ବାବୁ । ଆଉ ବେଶୀଦିନ ନୁହେଁ····ବାକି ରହିବେ ଆପଣ ଓ ନନ୍ଦକିଶୋର ବାବୁ···

ଗୋପାଳ— ଯାଃ....କି କଥା ଆପଣ କହୁଛନ୍ତି ?

ଅଭିରାମ—ସତେ ଗୋପାଳ ବାବୁ, ନନ୍ଦକିଶୋର ବାବୁଙ୍କର ତ କାହିଁ କିଛି ଖବର କହିଲ ନାହିଁ ?

ଗୋପାଳ—ତାଙ୍କ କଥା ଛାଡ଼ନ୍ତୁ···ପ୍ରମୋଶନ୍ ଉପରେ ପ୍ରମୋଶନ୍ ପାଉଛନ୍ତି ନନ୍ଦକିଶୋର ବାବୁ । ଭିକ୍ଟୋରିଆ ସ୍କୁଲରୁ ଶିକ୍ଷକରୁ ସବ୍ ଇନ୍‌ସ୍‌ପେକ୍ଟର । ସେଥିରୁ ପୁଣି କ: ଟି: ପଢ଼ି ଟ୍ରେନିଂ ସ୍କୁଲର ଶିକ୍ଷକ, ତାପରେ ସମ୍ବଲପୁର

ଜିଲ୍ଲା ସ୍କୁଲର ଶିକ୍ଷକ, ସେଥିରୁ ପୁଣି ଇନ୍ସପେକ୍ଟର ହୋଇଛନ୍ତି···ପୁଣି ତ କ'ଣ ଭିତର ଖବର ମିଳୁଛି ଯେ ଓଡ଼ିଶା ପବ୍ଲିସିଟିର କନ୍‌ଫିଡ଼େନ୍‌ସିଆଲ୍ ରିପୋର୍ଟର୍ ହେବେ ବୋଲି···

ଅଭିରାମ—ନନ୍ଦକିଶୋର ବାବୁ ପ୍ରକୃତରେ ଭାଗ୍ୟବାନ୍ । କେତେ ସହଜରେ ତାଙ୍କର ପ୍ରମୋଶନ୍ ହେଉଛି କହିଲେ । ହିସାବରେ କେବଳ ନୁହେଁ, ଜଣେ ଜ୍ଞାନୀ ହିସାବରେ ମଧ୍ୟ ସେ ଆଜି ସୁପ୍ରତିଷ୍ଠିତ....

ଗୋପାଲ – ଖାଲି ଆମେ କେତେଜଣ କେବଳ ଯାହା ଏକା ଜାଗାରେ ଗୋଳେଇ ଘାଣ୍ଟି ହେଉଛନ୍ତି....ନନ୍ଦକିଶୋର ବାବୁ ନିକଟରେ ବାଲେଶ୍ୱରରୁ କଟକ ଆସୁଛନ୍ତି ବୋଲି ଲେଖିଥିଲେ ।

ଅଭିରାମ – ବାଲେଶ୍ୱରରେ କ'ଣ ଜିଲ୍ଲାସ୍କୁଲ ହେଡ୍ ମାଷ୍ଟର ?

ଗୋପାଲ – ହଁ, ଏଇ ନିକଟରେ ସେ ନର୍ଦ୍ଦନ ସର୍କଲର ଇନ୍ସପେକ୍ଟର ହୋଇ ଯାଉଛନ୍ତି...

ଅଭିରାମ—Lucky Fellow···ହଉ ଆପଣ ତେବେ ଆସନ୍ତୁ ଗୋପାଲ ବାବୁ ! ନନ୍ଦକିଶୋର ବାବୁ କଟକ ଆସିଲେ ମୋତେ ଟିକିଏ ଖବର ଦେବେ ।

(ଚାଲିଗଲେ)

ଗୋପାଲ — ନମସ୍ତେ !

(ବିପରୀତ ଦିଗରେ ପ୍ରସ୍ଥାନ)

**ପଟ କ୍ଷେପ**

## ଦୃଶ୍ୟ ଛଅ

[ ବାଲେଶ୍ୱରରେ ଫକୀର ମୋହନଙ୍କ ବାସଭବନ "ଶାନ୍ତ କାନନ'ର ଏକ ଦୃଶ୍ୟ – ସମୟ—ସୂର୍ଯ୍ୟାସ୍ତର କିଛି ପୂର୍ବରୁ । ଅଦୂରରେ ଫକୀରମୋହନଙ୍କ ମୃତ ସ୍ତ୍ରୀଙ୍କର ସମାଧିର କିୟଦଂଶ ଦୃଷ୍ଟିଗୋଚର ହୁଏ—ଉଦ୍ୟାନର ମଧ୍ୟଭାଗରେ ଦୁଇଟି ଚେୟାରରେ ବସିଥିଲେ ଜୀର୍ଣ୍ଣଶୀର୍ଣ୍ଣ ଫକୀର ମୋହନ ଓ ନନ୍ଦକିଶୋର-ନନ୍ଦକିଶୋର ପ୍ରୌଢ଼ତ୍ୱରେ ପଦାର୍ପଣ କଲେଣି ]

ଫକୀର—ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମୁଁ ଆପଣଙ୍କୁ ଭୁଲି ପାରିବି ନାହିଁ ନନ୍ଦକିଶୋର ବାବୁ ! ଚିରଦୁଃଖୀ ମୁଁ, ଚିରଦିନ ଏକାକୀ, ପିଲାଟିଦିନରୁ ବାପ ମା ଛେଉଣ୍ଡ ହେଲି । ଗୋସିମା କେତେ କଷ୍ଟରେ ପାଳି ପୋଷି ମଣିଷ କରି ସୁଖ କରିବା ଆଗରୁ ସେ ବି ବାଟ ଧରିଲେ । ସ୍ତ୍ରୀ ମୋର ତିନୋଟି ସନ୍ତାନଙ୍କୁ ରଖି ଆଖି ବୁଜିଲେ – ଶେଷକୁ ପୁଅ ବୋହୂ ଆଜି ବିଦେଶରେ, ଝିଅ ଶାଶୁଘରେ (କ୍ରନ୍ଦନ ସ୍ୱର) ଏକାକୀ ପଡ଼ି ରହିଲି ମୁଁ । ଆପଣଙ୍କୁ ବହୁଦିନ ଧରି ବାନ୍ଧି ରଖିଥିଲି । କେତେ ସୁଖରେ ଦିନଗୁଡ଼ିକ ମୋର ବିତିଯାଉଥିଲା । ଶେଷକୁ ଆପଣ ବି ଦୁଇ ଦିନ ପରେ ଯିବେ ବାହାରି ·· ଯାନ୍ତୁ···ହତଭାଗାଟା ଯେମିତି ଏକା ହୋଇ ଆସିଥିଲା ସଂସାରକୁ, ସେମିତି ଏକାହୋଇ ଚାଲିଯିବ···

(ଆଖିରୁ ଲୋତକ ଝରିଲା)

ନନ୍ଦ—ପୃଷ୍ଠ ବ୍ରଣ ରୋଗରେ ପଡ଼ି ପଡ଼ି ଉଠିଛନ୍ତି କି ନାହିଁ ପୁଣି ହୃତ୍‌କମ୍ପ ରୋଗରେ ପଡ଼ିଲେ·····

ଫକୀର—କୁହନ୍ତୁ ନାହିଁ, ଆଉ ସେ କଥା । ସ୍ୱହସ୍ତରେ ବିଷପାନ କଥା ଆପଣ ଶୁଣିଥିଲେ ଇତିହାସରୁ, ହେଲେ ପୃଷ୍ଠବ୍ରଣ ରୋଗ ମୋର ଜନ୍ମିଥିଲା । ବିଧାତା ମୋ ଉପରେ ରୁଷ୍ଟ ··ତେଣୁ ଯେଉଁମାନେ ମୋ ପ୍ରତି ଦୟା ଦେଖେଇଲେ ସେମାନଙ୍କ ଉପରେ ମଧ୍ୟ ବିଧାତା ରୁଷ୍ଟ ହେଲେ । ହଁ, ଆପଣ ଶୀଘ୍ର ଚାଲିଯାନ୍ତୁ ନନ୍ଦକିଶୋର ବାବୁ, ନ ହେଲେ ଆପଣଙ୍କ ଉପରେ ବିପତ୍ତି ପଡ଼ିବ.... (କାନ୍ଦିଲେ ଅତ୍ୟନ୍ତ ଅଧୀର ଭାବରେ)

ନନ୍ଦ—ଏ କ'ଣ ଆପଣ କହୁଛନ୍ତି ଫକୀର ମୋହନ ବାବୁ । (ସମବେଦନା), ଏତେ ଅଧୀର ହେଲେ ଆପଣ ଚଳିବେ କେମିତି । ମୁଁ ବୁଝୁଛି ଆପଣ ଆଜି

ଏକା—ସ୍ୱଜନ ଆତ୍ମୀୟମାନଙ୍କ ସେବା ଆଜ୍ଞ ଆପଣଙ୍କର ଏକାନ୍ତ ଆବଶ୍ୟକ ହେଲେ ଆପଣଙ୍କ ସଂସ୍ପର୍ଶରେ ଆସି ମୁଁ କୃତାର୍ଥ ହେଇଛି । ଫକୀର ମୋହନ ବାବୁ ! ଆପଣଙ୍କ ପ୍ରେରଣାରେ ମୋର ଏକମାତ୍ର ଉପନ୍ୟାସ 'କନକଲତା' ସମ୍ଭବ ହୋଇପାରିଲା । 'ମାଧ ମହାନ୍ତିଙ୍କ କନ୍ୟା ସୁନା' ଲେଖିସାରିବା ପରେ ଆପଣଙ୍କ ପ୍ରେରଣା ପାଇ ମୁଁ ଲେଖିଲି 'ଲକ୍ଷ୍ମୀ' ଗଳ୍ପ ।

ଫକୀର – କିନ୍ତୁ ଗଳ୍ପ ଦୁଇଟିର ଜନକ ଆପଣ ନିଜେ ନନ୍ଦକିଶୋର ବାବୁ ! ଏକଥା ଭୁଲି ଯାଉଛନ୍ତି ଯେ – 'ମାମୁଁ'ର ଲେଖକ ମୁଁ ହେଲେ ମଧ୍ୟ ଆପଣ ତାହାର ଜନ୍ମଦାତା । 'ଲଛମା' ଉପନ୍ୟାସ ଲେଖିବା କେବଳ ଆପଣଙ୍କ ପ୍ରେରଣା ଯୋଗୁଁ ହିଁ ସମ୍ଭବ ହୋଇପାରିଲା । ମୁଁ, ସ୍ଥିର ମୋର ଲେଖନୀ ତଥାପି ଆପଣଙ୍କର ଅନୁଭୂତି, କଳ୍ପନା ଆଉ ପ୍ରେରଣାରେ ମୋତେ ଉଦ୍‌ବୁଦ୍ଧ କଲେ ଆପଣ । ଧନ୍ୟ ଆପଣଙ୍କର ପ୍ରତିଭା ! ପ୍ରତିଦିନ ସନ୍ଧ୍ୟାବେଳେ ଆପଣ ଯେତେବେଳେ ଆସି ଏଠି ପହଞ୍ଚୁଛନ୍ତି, ନନ୍ଦକିଶୋର ବାବୁ ସତ କହୁଛି, ପୁତ୍ରକଷ୍ଟ ମୁଁ ପାସୋର ପକାଏଁ । ପ୍ରତିଟି କଥାରେ ଆପଣଙ୍କର ମାଧୁର୍ଯ୍ୟ···ମୁଁ ସେତେବେଳେ ସମସ୍ତ ବେଦନାକୁ ପାସୋର ପକାଏଁ—କୃଷ୍ଣାର ଏହି ସମାଧି ଦେଖି ମୋର ମନେପଡ଼େ ଆପଣଙ୍କର 'କୃଷ୍ଣାକୁମାରୀ' କାବ୍ୟ କଥା···ଆପଣ ସେଥିରେ ଲେଖିଛନ୍ତି—

"ଅଛି ଆର୍ଯ୍ୟାବର୍ତ୍ତେ ରାଜସ୍ଥାନ ନାମେ ନରଟଙ୍କ ମରୁମୟ ଭୂଖଣ୍ଡ"

ପୁଣି ଆଉ କେତେ ପଦ ଗୁଡ଼ିଏ ଲେଖିଛନ୍ତି ।

"ସୁଜଳା ସୃଫଳା କରି ଯେଉଁ ଭୂମି ଚଉଦିଗସ୍ଥ ନିରନ୍ତେ ବହେ"—
ଏ ପଦ ଦୁଇଟି ଏକକାଳୀନ ସଙ୍ଗତ ବୋଲି ଅନେକ କହନ୍ତି, କିନ୍ତୁ ମୋ ମତରେ ଏ ପଦ ଦୁଇଟି ବ୍ୟକ୍ତିତ୍ୱର ଗଭୀର ପରିଚୟ ଦିଏ । ଆପଣଙ୍କର ଏ ଦୁଇଧାଡ଼ି ପଢ଼ି ପଦ୍ମର ସ୍ମୃତି ମନରେ ଦେଖାଦିଏ । ପଙ୍କରୁ ପୁଣି ପଦ୍ମ ପରି ଫୁଲର ସୃଷ୍ଟି···· ଅଦ୍ଭୁତ ଏ ସୃଜନ କଳା !

ନନ୍ଦ—ଏଇ ପଦ ଦୁଇଟି ପରସ୍ପର ଅସଙ୍ଗତ ବୋଲି ବାମଣ୍ଡାର ରାଜା ସାର ସୁଡ଼ଳଦେବ ମୋ ପାଖକୁ ପତ୍ର ଦେଇଥିଲେ ।

ଫକୀର—ଏ ଖବର ମୁଁ ଜାଣେ ନନ୍ଦକିଶୋର ବାବୁ ! ଆପଣ ଉତ୍ତରରେ କଣ ଲେଖିଥିଲେ ?

ନନ୍ଦ—ଲେଖିଥିଲି, ଗଡ଼ଜାତ ଅରଣ୍ୟମୟ ପାର୍ବତ୍ୟ ଅଞ୍ଚଳ ହେଲେ କଣ ବୁଝିବାକୁ ହେବ ଯେ ଗଡ଼ଜାତରେ ସୁଡ଼ଳଦେବଙ୍କ ପରି ଜ୍ଞାନୀ ନାହାନ୍ତି ? ରାଜ ସଭା ନାହିଁ ? ଆଉ ଶାସ୍ତ୍ରାଲୋଚନା ବି ହୁଏନା ?

ଫକୀର—(ସାମାନ୍ୟ ହସି) ଯଥାର୍ଥ ଉତ୍ତର ନନ୍ଦକିଶୋର ବାବୁ । ସୁଢ଼ଳ ଦେବ କୃତି ପାରିଥିବେ କେତେ ଗଭୀରର ପାଣି ପିଇଛନ୍ତି 'କୃଷ୍ଣ କୁମାରୀ'ର କବି......

ନନ୍ଦ—ପ୍ରକୃତରେ ଫକୀର ମୋହନ ବାବୁ, ସୁଢ଼ଳ ଦେବ ଏ ଯୁଗର ବିକ୍ରମାଦିତ୍ୟ । ତାଙ୍କ ପରି ସାହିତ୍ୟାନୁରାଗୀ ଶାସକ ଏ ଦେଶରେ ବିରଳ । ତାଙ୍କ ସହିତ ମୋର ପ୍ରଥମେ ସାକ୍ଷାତ ହୁଏ ରାଧାନାଥ ବାବୁଙ୍କ ଘରେ । ପ୍ରଥମେ ସେ ମୋର ପରିଚୟ ପାଇ ଆନନ୍ଦରେ କହିଉଠିଲେ 'ପଲ୍ଲୀଚିତ୍ର'ର କବି ହିସାବରେ ମୁଁ ଆପଣଙ୍କୁ ସ୍ୱାଗତ କରୁଛି ନନ୍ଦକିଶୋର ସୁଢ଼ଳଦେବଙ୍କ ପରି ଶାସକ ଚିରଦିନ ଏ ଦେଶର ଶାସନ କରନ୍ତୁ, ଭଗବାନଙ୍କ ନିକଟରେ ଏଇ ମୋର ପ୍ରାର୍ଥନା—ଓଡ଼ିଆ ସାହିତ୍ୟର ଆଲୋଚନା ପାଇଁ ତାଙ୍କର ଉଦ୍ୟମ ଚିରଦିନ ପାଇଁ ଏ ଜାତି ଉପରେ ପ୍ରଭାବ ପକାଇବ ବୋଲି ମୋର ବିଶ୍ୱାସ...

ଫକୀର – କେବଳ ସେତିକି ନୁହେଁ, ଉତ୍କଳ ସମ୍ମିଳନୀକୁ ତାଙ୍କର ଦାନ ମଧ୍ୟ ଚିରସ୍ମରଣୀୟ । ସେ ଏକାଧାରରେ ଶାସକ – ସେବକ, ଭାବୁକ ଆଉ ଦୀନ ଓଡ଼ିଆ କବିମାନଙ୍କୁ ସେ ଯଥେଷ୍ଟ ଯେ ସାହାଯ୍ୟ କରି ଆସିଛନ୍ତି କେବଳ ସାହିତ୍ୟ ନୁହେଁ ଓଡ଼ିଶାର ସାହିତ୍ୟିକ ମଧ୍ୟ ତାଙ୍କଠାରେ ଚିରଦିନ ଋଣୀ ।...ହଁ, ମନେ ପଡ଼ୁଛି ନନ୍ଦକିଶୋର ବାବୁ, ଆପଣଙ୍କ ସହିତ ଯେଉଁ ଭାଷାଗତ ଆଲୋଚନା ମୋର ସିଦ୍ଧାନ୍ତ ତ ଆପଣ କରି ନାହାନ୍ତି ।

ନନ୍ଦ—ସେ କଥା ତୁମର ମନେ ଅଛି ଫକୀର ମୋହନ ବାବୁ । ଭାରତର ଭବିଷ୍ୟତ ରାଷ୍ଟ୍ରଭାଷା ପାଇଁ କେବଳ ହିନ୍ଦୀ ହିଁ ଉପଯୁକ୍ତ ଭାଷା ।

ଫକୀର—ମୁଁ ମଧ୍ୟ ଦିନେ ସେଇ ଭାବନା କରିଥିଲି । କିନ୍ତୁ ନନ୍ଦକିଶୋର ବାବୁ, ଆଜିର ଉନ୍ନତ ବଙ୍ଗ ସାହିତ୍ୟକୁ ଦେଖିଲେ ହିନ୍ଦୀକୁ ପ୍ରକୃତରେ ରାଷ୍ଟ୍ରଭାଷା ବୋଲି ସ୍ୱୀକାର କରିବାକୁ ସାହସ ହୁଏନା ।

ନନ୍ଦ – ବଙ୍ଗଭାଷା ଉନ୍ନତ ହେଲେ ମଧ୍ୟ କଥିତ ଭାଷା ହିସାବରେ ହିନ୍ଦୀ ଭାଷା ଠାରୁ ଯଥେଷ୍ଟ ପଛରେ ଏବଂ ଆମକୁ ସ୍ୱୀକାର କରିବାକୁ ହେବ ଯେ କୌଣସି ଭାଷାକୁ ରାଷ୍ଟ୍ରଭାଷା କରିବାକୁ ହେଲେ ଉକ୍ତ ଭାଷାଭାଷୀ ଅଞ୍ଚଳ ତଥା ଜନସଂଖ୍ୟା ଦେଶ ମଧ୍ୟରେ ସର୍ବାଧିକ ହେବା ଆବଶ୍ୟକ । ଏ ଦୃଷ୍ଟିରୁ ଦେଖିଲେ ସ ୧୮୯୧ ର ଗଣନା ଅନୁଯାୟୀ ସମଗ୍ର ଲୋକସଂଖ୍ୟା ୨୮ କୋଟି ଛଅ ନିୟୁତରୁ ହିନ୍ଦୀ ଭାଷାଭାଷୀ ଜନସଂଖ୍ୟା

୮ କୋଟି - ବଙ୍ଗ ଭାଷାଭାଷୀ ୪ କୋଟି-ଓଡ଼ିଆ ୭ ନିୟୁତ, ତେଲୁଗୁ ୧ କୋଟି ୩ ନିୟୁତ ଏବଂ ଅନ୍ୟାନ୍ୟ ଭାଷାଭାଷୀ ବାକି ସବୁ । ଏଥର କହିଲେ ଫକୀର-ମୋହନ ବାବୁ, କେଉଁ ଦୁଃସାହସ ନେଇ ବଙ୍ଗଭାଷୀ-ମାନେ ନିଜର ମାତୃଭାଷାକୁ ରାଷ୍ଟ୍ରଭାଷା କରିବାକୁ ଚାହାନ୍ତି ?

ଫକୀର—ଆପଣଙ୍କ ଚିନ୍ତାଧାରା ଯଥାର୍ଥ ନନ୍ଦକିଶୋର ବାବୁ ! ହେଲେ ମୋତେ ଯାହା ଜଣାଯାଉଛି, ଭାଷାଗତ ସମସ୍ୟା ଏତେ ସହଜରେ ସମାଧାନ ହୋଇ ପାରିବ ନାହିଁ । ଏଥିପାଇଁ ଖିତମତ ଗଣବିଦ୍ରୋହ ଉଠନେ ଦେଖାଦେବ । ବିଚାର ଦୃଷ୍ଟିରୁ ହିନ୍ଦୀ ଭାଷା ରାଷ୍ଟ୍ରଭାଷା ପାଇଁ ଉପଯୁକ୍ତ ହେଲେ ମଧ୍ୟ ବିପ୍ଳବୀ-ହୃଦୟ ବଙ୍ଗଭାଷୀମାନେ ଏ ପ୍ରକାର ଅପମାନ କଦାପି ସହ୍ୟ କରିପାରିବେ ନାହିଁ ।

ନନ୍ଦ - ତଥାପି ମୁଁ ସ୍ପଷ୍ଟଭାବରେ କହିପାରେଁ ଏକମାତ୍ର ହିନ୍ଦୀ ହିଁ ଭବିଷ୍ୟତ ଭାରତର ରାଷ୍ଟ୍ରଭାଷା । ହିନ୍ଦୁସ୍ଥାନର ରାଷ୍ଟ୍ରଭାଷା ହିନ୍ଦୀ । ଓଜସ୍ୱୀ ଆର୍ଯ୍ୟର ଭାଷା ହିନ୍ଦୀ ମଧ୍ୟ ସେହିପରି ଓଜସ୍ୱିନୀ ଆଉ ଜାଣନ୍ତି ଫକୀର ମୋହନ ବାବୁ, ବଙ୍ଗଭାଷୀମାନେ ରାଗିଲେ ହିନ୍ଦୀ କହନ୍ତି ସେହି କାରଣରୁ...... ( ସାମାନ୍ୟ ହସି )

ଫକୀର—(ହସିଲେ) ବେଶ୍, ବେଶ ଯୁକ୍ତି ଆପଣଙ୍କର ନନ୍ଦକିଶୋର ବାବୁ ! ଏ ଯୁକ୍ତିକୁ ସମର୍ଥନ କରିବାକୁ ମୁଁ ବାଧ୍ୟ । ତୁଣ୍ଡରେ ଆପଣଙ୍କର ଫୁଲ ଚନ୍ଦନ ପଡୁ......ଆମର ତ ଆଉ ସ୍ୱାଧୀନ ଭାରତ ଦେଖିବାର ଭାଗ୍ୟ ନାହିଁ । ଭବିଷ୍ୟତ ବଂଶଧରମାନଙ୍କୁ ଆପଣଙ୍କର ଏ ବିଚାର ନିଶ୍ଚୟ ସୁପଥ ଦେଖାଇବ—ଏଥିରେ ସନ୍ଦେହ ନାହିଁ । (ଇତି ମଧ୍ୟରେ ସନ୍ଧ୍ୟା ହୋଇଯାଇଛି )

ନନ୍ଦ—ଦେଶରେ ମୋ ଠାରୁ ବହୁ ଚିନ୍ତାଶୀଳ ବ୍ୟକ୍ତି ଅଛନ୍ତି ଆଉ ଭବିଷ୍ୟତରେ ଜନ୍ମହେବେ ମଧ୍ୟ......ସେ ସ୍ଥଳରେ ମୋ ପରି ଗୋଟାଏ ଅକିଞ୍ଚନ ଓଡ଼ିଆର ବିଚାର ଯେ ସେମାନଙ୍କର ଦୃଷ୍ଟିଗୋଚର ହେବ ଏ ବିଶ୍ୱାସ ମୋର ନାହିଁ ଫକୀର ମୋହନ ବାବୁ ! ତଥାପି ସ୍ୱାଧୀନ ଭାରତର ବହୁକାଳ ପୂର୍ବରୁ ମୁଁ ମୋ ମତ ବ୍ୟକ୍ତ କରିଗଲି । ସେ ମତ ଖଣ୍ଡିତ ହେଉ ବା ମଣ୍ଡିତ ହେଉ ସେଥିରେ ମୋର ଚିନ୍ତା କରିବାର ନାହିଁ ।......ହଁ, ଏଥର ଚାଲନ୍ତୁ ଆପଣ । ସନ୍ଧ୍ୟା ହୋଇ ଗଲାଣି... ପ୍ରାର୍ଥନାର ସମୟ ହୁଏତ ଗଡ଼ିଯିବ ।

ଝଙ୍କାର – ହଁ ଚାଲନ୍ତୁ ଆପଣ···କୃଷ୍ଣ ର ସମାଧି ଉପରେ ଦୁଇଟି ଫୁଲ ରଖି ମୁଁ ଯାଉଛି । ଫୁଲକୁ ସେ ଖୁବ ଭଲ ପାଉଥିଲେ । ଏଇ "ଶାନ୍ତ କାନନ" ଥିଲା ତାଙ୍କର ଅତି ପ୍ରିୟସ୍ଥଳୀ ଆଉ ଏଇ କାନନର ଫୁଲ ଥିଲା ତାଙ୍କର ସବୁଠାରୁ ପ୍ରିୟ ଭୂଷଣ··· ( ବାଷ୍ପରୁଦ୍ଧ କଣ୍ଠ ଶୁଣି ନନ୍ଦକିଶୋର ବିଚଳିତ ହେଲେ ) ଦୁହେଁ ଉଠିବା ସଙ୍ଗେ ସଙ୍ଗେ ।

ପଟାକ୍ଷେପ

## ଦୃଶ୍ୟ ସାତ

[ ଡଗରପଡ଼ା ରାସ୍ତା । ଅପରାହ୍ଣ । ନନ୍ଦକିଶୋରଙ୍କ ସାନଝିଅ ସରସ୍ୱତୀ (ସ୍ୱାରୀ) ମନଖୁସିରେ ଗୀତ ଗାଇ ଗାଇ ବସା ଆଡ଼କୁ ଯାଉଥିଲା । ଗୋଡ଼ ଦୁଇଟା ତା'ର ଡେଇଁ ଡେଇଁ ପଡ଼ୁଥାଏ ]

ସରସ୍ୱତୀ—ବେଙ୍ଗୁଲି ବେଙ୍ଗୁଲି ପାଣି ଦେ,
ନଈ ସମୁଦର ଭସେଇ ଦେ ।
ଇନ୍ଦ୍ର ରଜାଙ୍କର ବେଙ୍ଗୁଲି ରାଣୀ,
ବୋବେଇ ଦେଲେ ସେ ବରଷେ ପାଣି ।
ବେଙ୍ଗୁଲି ବସଇ ସାରୁ ମୂଳରେ,
ଛନ୍ଦେ ଧରିଅଛୁ ସାରୁ ପତ୍ରରେ ।
ବେଙ୍ଗୁଲି ବୋବାଏ କେଁ-କଟର,
ପାଣିରେ ଭାସଇ ଘର ଦୁଆର ।
(ଚାଲି ଯାଉଥିବା ପଛରେ ଆସିଛନ୍ତି କାମପାଳ ମିଶ୍ର । ସେ ଅର୍ଦ୍ଧ ପାଗଳ)

କାମପାଳ—ହେ-ହେ ବେଙ୍ଗୁଲି, ଲୋ ବେଙ୍ଗୁଲି....(ବିକୃତ ଗଳାରେ)....ଘର ଦୁଆର ଭାସିଗଲା....କେଁ କଟର···କେଁ କଟର···କବିତା ପଢୁଛୁ ? କ କବିତା ଲୋ ଇଏ....

ସର—(ଫେରିଚାହିଁ ଭୟ ପାଇଲା) କିଏ ମ ? ମୋ ବୋଉ ଲୋ ! ପାଗଳାଟାଏ ଆଇଲାଣି····ଆଲୋ ବୋଉ···

କାମପାଳ—ହେ····ହେ ··ହେ···କିଏ ଲୋ ତୁ ? ମୋତେ କହୁଛୁ ପାଗଳା ? ଯା—ଭାଗ୍···ଫେର ଗୀତ ଗାଇବୁ ତ ତୋ ମୁଣ୍ଡ ଛତ୍ରୁ କରିଦେବି । (ମାରିବାକୁ ଦଉଡ଼ିବାରୁ ସରସ୍ୱତୀ ପଳାଇଲା)···ଏ···ଏ ··ଏ, 'ସୀତା ବିବାହ' ପଢ଼ିଛୁ ? ଏଁ ···ପଢ଼ିନୁ ? 'ବସନ୍ତ ଲତିକା' ? ···ଏଁ ପଢ଼ିନୁ ? ଆଉ କ'ଣ ତୁ ପଢ଼ିଛୁ 'ପଲ୍ଲୀଚିତ୍ର' ? ହେଃ, ହେଃ, 'ପଲ୍ଲୀଚିତ୍ର' ପଢ଼ିଛୁ

ଇଏ···ଆଃ, ଖାସ୍‌ସା କବିତା ଏକା···ଖାସ୍‌ସା କବିତା....ହୋ-ହୋ-ହୋ···ମୁଁ .କାଲେ ଷ୍ଟେର···'ସୀତା ବିବାହ'କୁ ମୁଁ ଷ୍ଟେର କରିଛି... ଯ୍ଯା'ପଃ···ହା-ହା-ହା

(ଉଚ୍ଚ ହାସ୍ୟ କଲେ । ଦଉଡ଼ି ଦଉଡ଼ି ଆସିଲା ତାଙ୍କ ଘରର ଚାକର)

ଚାକର—ବାବୁ, ବାବୁ, ଘରକୁ ଆସନ୍ତୁ ବାବୁ···ଏମିତି ଆଉ ହୁଅନ୍ତୁ ନାହିଁ···ମା, ଗ୍ରେଟ ବାବୁ ସମସ୍ତେ କାନ୍ଦୁଛନ୍ତି····ଆପଣ ଘରକୁ ଆସନ୍ତୁ ବାବୁ·····

କାମପାଳ—ଏଁ....ଏଁ····କିଏ ତୁ ?

ଚାକର—ମୁଁ ? ମୋତେ ଚିହ୍ନି ପାରୁନାହାନ୍ତି ବାବୁ ! ମୁଁ ପରି ସନା !

କାମପାଳ – ଏଁ···ସନା ? ତୁ·· ତୁ 'ପଲ୍ଲୀଚନ୍ଦ' ପଢ଼ିଛୁ ?

ଚାକର – ନାଁ ଆଜ୍ଞା, ସେ ବହି ମୁଁ ଜମା ପଢ଼ିନି । ଆପଣଙ୍କ ବହି 'ସୀତା ବିବାହ' ଠାରୁ କେତେ ଖରାପ ସେଇଟା····ଛିଃ···ଛିଃ···

କାମପାଳ – ଏଁ ? 'ପଲ୍ଲୀଚନ୍ଦ' ଖରାପ ? ତୁ···ତୁ . ସତ କହୁଛୁ ?

ଚାକର—ଆଜ୍ଞା, ବିଶ୍ୱାସ କରନ୍ତୁ ମୋତେ····(କାନ୍ଦ କାନ୍ଦ ହୋଇ) ମୁଁ ଆପଣଙ୍କର କେତେ ପୁରୁଣା ଚାକର···ମୋତେ ଆପଣ ବିଶ୍ୱାସ କରୁନାହାନ୍ତି··· ମୋତେ ଆପଣ ଚିହ୍ନି ପାରୁନାହାନ୍ତି ?

କାମପାଳ—ହଁ···ହଁ···ମୁଁ ତୋତେ ବିଶ୍ୱାସ କରେଁ । ତୁ ସତ କହୁଛୁ । ଆଉସବୁ ମୋର ଶତ୍ରୁ····ସେମାନେ, ମୋତେ ଈର୍ଷ୍ୟା କରନ୍ତି···ସେମାନେ··· ସେମାନେ ସବୁ ଡାଉନ୍ କରିବାକୁ ଚାହାନ୍ତି ମୋତେ । ଚାଲ୍....ଚାଲ୍··· ଏଠୁ ପଳେଇବା ଆମେ....ଏମାନେ···ଏମାନେ ସବୁ ମିଳିମିଶି ମୋତେ ପାଗଳ କରିଦେବେ । ପାଗଳ କରିଦେବେ ମୋତେ···

(ଥରି ଥରି ପଳେଇ ଗଲେ । ପଛେ ପଛେ ଚାକର ଡାକ ଡାକ ଦଉଡ଼ୁଛି···)

ଚାକର—ବାବୁ···ବାବୁ···ରହନ୍ତୁ ବାବୁ ! ···

ପଟ୍ଟ କ୍ଷେପ

## ଦୃଶ୍ୟ ଆଠ

[ନନ୍ଦକିଶୋର ବାବୁଙ୍କ ଉପରପଡ଼ା ବସା । ମଧ୍ୟାହ୍ନ । ପ୍ରୌଢ଼ ନନ୍ଦକିଶୋର ଅସ୍ଥିର ପଦଚାରଣା କରୁଥିଲେ । ସେ ଖୁବ୍ ଅନ୍ୟମନସ୍କ ]

ନନ୍ଦ—ନଷ୍ଟ ହୋଇଗଲା···ଗୋଟିଏ ଅମୂଲ୍ୟ ପ୍ରାଣ ନଷ୍ଟ ହୋଇଗଲା···କେବଳ ମୋର ପାଇଁ ଗୋଟାଏ ପ୍ରତିଭା ନଷ୍ଟ ହୋଇଗଲା ମୋର ପାଇଁ କେବଳ କଳିଟି ଫୁଟିବା ଆଗରୁ ଝଡ଼ିଗଲା କାଳବାତ୍ୟାରେ ନିଃଶ୍ୱାସରେ.... କାମପାଳ ବାବୁ, ମୋତେ କ୍ଷମା କରନ୍ତୁ କାମପାଳ ବାବୁ ! କାଳବାତ୍ୟାର ଧାରଣା ନେଇ ମୁଁ କଦାପି ହେବନ ଆପଣଙ୍କ ପ୍ରତି ଆକ୍ଷେପ କରି ନଥିଲି । ମୁଁ ଜାଣି ନଥିଲି ସାମାନ୍ୟ ଆଘାତରେ ଗୋଟାଏ ମହାମେରୁ ଏଇମିତି ଉପୁଡ଼ି ପଡ଼ିବ ବୋଲି ···(ଦୁଃଖରେ) ଓଃ, କ'ଣ ହୋଇଗଲା ସତେ ! (ଘରଆଡ଼କୁ ଚାହିଁ) ଅନ୍ଧାର···ମୋତେ ଆଜି କାହିଁକି ସବୁ ଅନ୍ଧାର ଦେଖାଯାଉଛି···ଘରଆଡ଼ ଅନ୍ଧାର ଦେଖାଯାଉଛି···ଜୀବନର ସନ୍ଧ୍ୟା··· ମୋର ଆଉ ବେଶୀ ସମୟ ନାହିଁ···ପାରି ବୋଉ....ଏ ପାରି ବୋଉ···

କୋକିଳ – (ଭିତରୁ) ଯାଉଛି···(ପ୍ରବେଶ କରି) କ'ଣ ହେଲା ତୁମର ?

ନନ୍ଦ—ଏ ପାରିବୋଉ, ପିଲାମାନେ ସବୁ କାହାନ୍ତି ? ···(ବିଚଳିତ)

କୋକିଳ – ଖରାବେଳଟାରେ ତୁମେ ଏମିତି କାହିଁକି ହଉଛ କହିଲ ? ପିଲା-ଗୁଡ଼ାକ ସବୁ ଶୋଇଛନ୍ତି !

ନନ୍ଦ—ମୋତେ ସବୁ କାହିଁକି ଆଜି ଅନ୍ଧାର ଦେଖାଯାଉଛି ପାରି ବୋଉ (ହାତରେ ଅଣ୍ଡାଳୁଥିଲେ) ତୁମେ···ତୁମେ··· କେଉଁଠି ଅଛ ? ଆସିଲ ଟିକେ ପାଖକୁ···ମୁଁ ଦେଖେଁ ଭଲକରି···(ଆଖି ମଳି)···ନା-ନା ଠିକ୍ ଅଛି । ସବୁ ଠିକ୍ ଅଛି···ସାମାନ୍ୟ ମାନସିକ ବିକୃତିରୁ ମୋର ଏପରି ଘଟିଥିଲା ବୋଧହୁଏ···ଆଚ୍ଛା···ଯାଅ···ଯାଅ···ଯାଅ ତୁମେ ଏବେ । ପିଲାମାନେ ଶୋଇଛନ୍ତି···ତାଙ୍କୁ ଟିକିଏ ଦେଖ···

କୋକିଳ.....(ବ୍ୟସ୍ତ ଭାବରେ) ନାହିଁ, ସେମାନେ ଶୋଇଛନ୍ତି । ଖରାବେଳେ ଜମା ତ ଶୋଇବ ନାହିଁ ସେ ବେଳ ଆଉ ଅଛି ? କହିଲ ଭଲ ଖଟି ଖଟି ଦିହ ତୁମର କ'ଣ ହେଲଣି ? ରାତି ନାହିଁ, ଦିନ ନାହିଁ, ସବୁବେଳେ କାମ ...ପଢ଼ା ଲେଖା କରି କରି ଆଖି ଦି'ଟାକୁ ସାରିଦେବ ଦେଖୁଛି । .. ଚାଲ, ଚାଲ ତୁମେ ଶୋଇବ (ହାତଧରି ଟାଣିଲେ)

ନନ୍ଦ – ଥାଉ ପାରି ବୋଉ, ମୋତେ ଏବେ ସବୁ ଦେଖା ହେଲଣି... କେତେ କାମ ପଡ଼ିଛି....ଗଭର୍ଣ୍ଣର ଲର୍ଡ଼ ସିଂହଙ୍କୁ କଣ୍ଡର ଗାର୍ଡନ ପଲିଟି ବିଷୟରେ ଗୋଟାଏ ରିପୋର୍ଟ ହେବ ଦୁଇଦିନ ଭିତରେ... ବାଳମୁକୁନ୍ଦ ବାବୁଙ୍କୁ ପୁଣି ଥରେ ଦେଖା କରିବାକୁ ପଡ଼ିବ...ସମୟ ମୋର ଏକାନ୍ତ ଅଭାବ ପାରି ବୋଉ ! ମୁଁ ବୋଧହୁଏ ଏ ଜନ୍ମରେ ଆଉ ଶାନ୍ତିରେ ଶୋଇ ପାରିବି ନାହିଁ । ....ହଁ, ମୋତେ ଗ୍ଲାସେ ପାଣି ଦିଅ...

କୋକିଳ—ତୁମେ ଟିକିଏ ବସିଲ ଏଇଠି....(ତାଙ୍କୁ ନେଇ ଚେୟାରରେ ବସେଇ ଦେଇ ପାଣି ଆଣିବାକୁ ଗଲେ । ନନ୍ଦକିଶୋର ଟେବୁଲ ଉପରେ ମୁଣ୍ଡ ରଖିଲେ । ଦକ୍ଷିଣ ପଟର ଦରଜା ଦେଇ ରେବା ରାଓ ପ୍ରବେଶ କଲେ)

ରେବା – ନନ୍ଦକିଶୋର ବାବୁ !

ନନ୍ଦ – ଏ...କିଏ ? ରେବା ? ତୁମେ କେତେବେଳେ ଆସିଲ ?
(ମୁହଁ ଟେକି ଚାହିଁଲେ ରେବାଙ୍କୁ । ରେବାଙ୍କ ସୀମନ୍ତରେ ସିନ୍ଦୂର ଦେଖି) ...ହୁଁ । ତୁମେ ତେବେ ଶେଷରେ ନୀଳମଣି ବାବୁଙ୍କୁ ବିବାହ କଲ ରେବା ! କିନ୍ତୁ ଜୀବନର ଅର୍ଦ୍ଧଶତାବ୍ଦୀର ଶେଷ ସୀମାରେ ତୁମର ଏ କାର୍ଯ୍ୟ କରିବାଟା କ'ଣ ଉଚିତ ହେଲ ?

ରେବା—ବାଧ୍ୟ ହେଲି ନନ୍ଦକିଶୋର ବାବୁ ! ମନର ·ଦାଉକୁ ମୁଁ ଆଉ ସମ୍ଭାଳି ପାରିଲି ନାହିଁ ।

ନନ୍ଦ —କିନ୍ତୁ ମୁଁ ତୁମକୁ ଏକ ମନସ୍ୱିନୀ ରୂପରେ ଦେଖୁଥିଲି ।

ରେବା—(ନିର୍ଭୟ ଅଥଚ ସନ୍ତପ୍ତ ସ୍ୱର) ସତ୍ୟର ପ୍ରକାଶ କରିବାରେ ମୁଁ କ'ଣ କିଛି ଅନ୍ୟାୟ କରିଛି ନନ୍ଦକିଶୋର ବାବୁ ?

ନନ୍ଦ—ଏ ବିଷୟରେ ତୁମକୁ ଆଉ ମୁଁ କିଛି କହିପାରିବି ନାହିଁ । ରେବା ! ମୋର ଆଉ କିଛି ଅଧିକାର ମଧ୍ୟ ନାହିଁ...

ରେବା—(ଆହତ ହୋଇ) ନନ୍ଦକିଶୋର ବାବୁ !

ନନ୍ଦ —ନା, ସେ ଅଧିକାର ତୁମେ ଶେଷ କରିଦେଇଛ ।

(ପ୍ରବେଶ କଲେ କୋକିଳ ପାଣି ନେଇ । ରେବାଙ୍କୁ ଦେଖି ମୁଣ୍ଡ ଉପରକୁ ଲୁଗା ଆଣିଲେ )

କୋକିଳ - ଅପୂର୍ବ ଯେ ! ଏତେ ଦିନକେ ମନରେ ପଡ଼ିଲ ରେବା ଅପା ! (ପାଣି ନେଇ ନନ୍ଦକିଶୋରଙ୍କୁ ଦେଲେ । )

ରେବା—(କୋକିଳଙ୍କୁ ଗୁହିଁ ଆହତ ସ୍ୱରରେ) ନା, ଭାଉଜ, ମୋତେ ରେବା ଅପା ବୋଲି ଡାକିବାର ଅଧିକାର ତୁମର ମୁଁ ନଷ୍ଟ କରିଦେଇଛି.....

(କାନ୍ଦିଲେ)

( କୋକିଳ ତାଙ୍କ ସୀମନ୍ତରେ ସିନ୍ଦୂର ଦେଖି ଆଶ୍ଚର୍ଯ୍ୟ ହେଲେ । ତାଙ୍କର କ୍ରନ୍ଦନ ଶୁଣି ନିର୍ବାକ୍ ମଧ୍ୟ )

ରେବା—(ଗୋଟିଏ ଚେୟାର ଉପରେ ହାତଭରା ରଖି କାନ୍ଦୁଥାନ୍ତି) କ'ଣ ଦେଖୁଛ ଆଉ ଭାଉଜ ! ରେବା ଅପା ତୁମର କଳଙ୍କିନୀ । ସେ ଆଉ ସମାଜରେ ମୁଣ୍ଡ ଟେକି ଗ୍ଲଲିପାରିବ ନାହିଁ...

କୋକିଳ—କ'ଣ ହୋଇଛି ତୁମର ରେବା ଅପା ! ମୁଁ ତ ବୁଝିପାରୁ ନାହିଁ ।

ରେବା—ନା, ତୁମେ ବୁଝିପାରିବ ନାହିଁ । ବୁଝିବାର ଆବଶ୍ୟକତା ବି ନାହିଁ । ମୁଁ ପତିତା । ତୁମେ ସାଧ୍ୱୀ । ଏକନିଷ୍ଠ, ନିଃସ୍ୱାର୍ଥପର ଭାବରେ ସେବା କରି ଜୀବନର ଅର୍ଦ୍ଧାଧିକ ସମୟ କଟାଇଦେଲି । ତଥାପି ମୁଁ ମନକୁ ବାନ୍ଧିରଖି ପାରିଲି ନାହିଁ.. ସତ୍‌ସାହସର ପରିଚୟ ଦେବାପାଇଁ ବିବାହ କଲି । ବ୍ରାହ୍ମ ଧର୍ମର ଆଦର୍ଶ ରୂପେ ମୁଁ ଅଜ୍ଞ ବିଧବା ବିବାହ କରିଛି ଭାଉଜ !

କୋକିଳ—ରେବା ଅପା ! (ଆଶ୍ଚର୍ଯ୍ୟରେ ଅଭିଭୂତ)

ରେବା—ସେଇଥିପାଇଁ ସମାଜ ଆଗରେ ମୁଁ ଆଜି କଳଙ୍କିନୀ ...

କୋକିଳ—(ସାନ୍ତ୍ୱନା ଦେଇ ସ୍ନେହରେ ତାଙ୍କର ଲୁହ ପୋଛିଦେଲେ ) ଛି, ରେବା ଅପା, ଏଇଥିପାଇଁ ତୁମେ ଏଡ଼େ ଅଧୀର ହେଉଛ ? ଏତିକି ଓଲି ତୁମେ ?

ରେବା—ନା, ଛାଡ଼ ମୋତେ ଭାଉଜ, ଛୁଇଁଲେ ଛୁଆଁ ହେବ....

କୋକିଳ—ସତେ, କିଏ କହିବ ମୋ ଅପାକୁ ଅଛୁଆଁ ବୋଲି ? ସୁନାପରି ଦାଉ ଦାଉ ଜଳୁଛି ଯା'ର ଦିହ ସେ ପୁଣି ଅଛୁଆଁ ହେବ ? ଜାଣେ ଯେ ଜାଣେ । ମୁଁ ସଭିଙ୍କ ମନକଥା ଜାଣେ । କିଏ କହିବ ତୁମକୁ ବିଧବା ବୋଲି ? ଅପା ମୋର କୁଆଁରୀ ଥିଲି ଏ ଯାକେ । ଦେଖିଲ, ଦେଖିଲ (ନନ୍ଦକିଶୋରଙ୍କ ପ୍ରତି) ମୋ ଅପା ମୁଣ୍ଡର ସିନ୍ଦୂର କପରି ଦାଉ ଦାଉ ହୋଇ ଜଳୁଛି....(ନନ୍ଦକିଶୋର ଅନ୍ୟମନସ୍କ ଭାବେ ରେବା ବାହାରକୁ

ଗୃହିଁଥିଲେ) ଅପାକୁ ମୋର କେହି ନ ରଖିଲେ ମୁ ରଖିବି । ···ଆସ ଅପା ! ଦୁଇ ଭଉଣୀ ସାଥୀ ହୋଇ ରହିବା । ପୁଣି କାନ୍ଦିଲେ ଏବେ ଗୁଣ ପକେଇବି । ଆସ (ଟାଣିଲେ)

ରେବା—ନା ଭାଉଜ, ତୁମେ ମୋତେ ଆଉ ବଳାଅ ନାହିଁ । ଓଡ଼ିଶାରେ ମୋର ଆଉ କେହି ନଜର ନାହାନ୍ତି । ବାପା ଗୃଲିଗଲେ । କେତେ କଷ୍ଟରେ ବାଳିକା ସ୍କୁଲଟିଏ 'ବସେଇଥିଲି । ଭାବିଥିଲି ଆଜୀବନ ସେଇଥିରେ କଟେଇ ଦେବି । ଶେଷକୁ ସେତକ ବି ଭାଙ୍ଗିଲା । ବଡ଼ ଲୋକଙ୍କ କଥା ରହିଲା । ମୁଁ ହେଲି ଭିକାରୁଣୀ ···ଆଉ ପୁଣି କାହିଁକି ··ନା, ଛାଡ଼ିଦିଅ ମୋତେ ଭାଉଜ ! ମୁଁ ଗୃଲିଯାଏଁ··· (ପୁଣି କାନ୍ଦିଲେ)

ନନ୍ଦ – (ରୁକ୍ଷ ସ୍ୱରରେ' ଛାଡ଼ିଦିଅ ପାର୍ବ ବୋଉ···

(କୋକିଳ ରେବାଙ୍କୁ ଛାଡ଼ିଦେଲେ ସେ ସ୍ୱର ଶୁଣି, ଆଖିରେ ତାଙ୍କର ଲୁହ....)

ରେବା – ଯାଉଛି ଭାଉଜ ! ରେବା ବୋଲି ତୁମର କେହି ଜଣେ ଥିଲା ସେକଥା ଭୁଲିଯିବ···(ଗୃଲି ଯାଉଥିଲେ । ଡ଼ାକିଲେ ନନ୍ଦକିଶୋର )

ନନ୍ଦ—ରେବା....

(ରେବା ଦରଜା ପାଖେ ଠିଆ ହେଲେ । )

ନନ୍ଦ – କୁଆଡ଼େ ଯାଉଛ ତୁମେ ? (ରୁକ୍ଷ ସ୍ୱର)

ରେବା—ଯୁଆଡ଼େ ଦି ଆଖି ପାଇବ ··

ନନ୍ଦ—ତଥାପି···

ରେବା—ସେକଥା ଜାଣିବାର ଅଧିକାର ମୁଁ ନଷ୍ଟ କରି ଦେଇଛି ନନ୍ଦକିଶୋର ବାବୁ ! ସେକଥା ଜାଣିବାର ଆବଶ୍ୟକ ମଧ୍ୟ ଆପଣଙ୍କର ନାହିଁ ।

(ଝଡ଼ ବେଗରେ ପଳେଇଲେ । କୋକିଳ ଆବେଗରେ ଦଉଡ଼ି ଯାଉଥିଲେ ଦ୍ୱାର ପାଖକୁ)

କୋକିଳ—ଅପା....

ନନ୍ଦ – ପାର୍ବ ବୋଉ, ତୁମେ ସ୍ଥିର ହୁଅ । (ଚେୟାର୍‌ରୁ ଉଠିଆସି) ସେ ଯାଇଛି ଯାଉ । ରେବାପରି କର୍ମିବନ୍ତୀ ନାରୀ ପାଇଁ ଓଡ଼ିଶାରେ ଆଜି ସ୍ଥାନ ନାହିଁ । ସେ ସମାଜ ଆଗରେ ପତିତା । କିନ୍ତୁ ସେହି ପତିତାକୁ ଆଜି ଏଲାହାବାଦ ଧର୍ମ ମହାମଣ୍ଡଳ ସାଦର ସ୍ୱାଗତ ଜଣାଉଛି । ଯାଉ ସେ । ଓଡ଼ିଶା ହୁଏତ ଦିନେ ତା' ପାଇଁ ଅଭାବ ଅନୁଭବ କରିବ···ଆଉ ରେବା ସେଦିନ ମାତୃଭୂମିର ଡାକ ଶୁଣି ନିଶ୍ଚିନ୍ତ ଫେରି ଆସିବ···

(ବାହାରେ ପାଟି ଶୁଭିଲା ଗୋପବନ୍ଧୁ ବାବୁଙ୍କର)

ଗୋପ – ନନ୍ଦକିଶୋରବାବୁ ଅଛନ୍ତି ? (ବାହାରୁ)

ନନ୍ଦ –(ଚମକିପଡ଼ି) ଆରେ ଗୋପବନ୍ଧୁବାବୁଙ୍କ ସ୍ୱର···ତୁମେ ଭିତରକୁ ଯାଅ ପାଗଳୀବୋଉ ! (କୋକିଳ ଜର୍ଦ୍ଦା ଖଦରେ ଗୃହଲଗଲେ । ନନ୍ଦକିଶୋର ପାଣି ପିଇସାର ଦ୍ୱାର ପର୍ଯ୍ୟନ୍ତ ଯାଇ) ଆସନ୍ତୁ···ଆସନ୍ତୁ ଆଜ୍ଞା ! ( ଗୋପବନ୍ଧୁ ପ୍ରବେଶ କଲେ ) ଉତ୍କଳମଣିଙ୍କୁ ମୋର ସଭକ୍ତି ପ୍ରଣାମ··· ଆଜି ମୋର କି ସୌଭାଗ୍ୟ·····

ଗୋପବନ୍ଧୁ – ନମସ୍କାର···ନମସ୍କାର । ଆପଣଙ୍କୁ ବହୁଥର ଖୋଜିଲିଣି ନନ୍ଦକିଶୋରବାବୁ ! ହେଲେ କର୍ମଠ ପୁରୁଷ ଆପଣ । କେତେବେଳେ ବା ଦେଖା ପାଇବି ? ମୋର ସାମାନ୍ୟ ଅନୁରୋଧ ଆପଣଙ୍କୁ ରଖିବାକୁ ହେବ । ବେଶୀ ସମୟ ମୁଁ ଆପଣଙ୍କର ନଷ୍ଟ କରିବି ନାହିଁ···

ନନ୍ଦ – ଅପଣଙ୍କ ପାଇଁ ମୁଁ ସବୁକିଛି କରିପାରିବି କୁହନ୍ତୁ ଆପଣ···

ଗୋପ—ସେଥର ଶିକ୍ଷା ସମ୍ବନ୍ଧରେ ଯେଉଁ ତଥ୍ୟ ଦେଇଥିଲେ ସେଗୁଡ଼ିକ ବହୁତ କାମରେ ଆସିଲା । ଆଗାମୀ କାଉନ୍‌ସିଲ ବୈଠକ ପାଇଁ ମୁଁ ପ୍ରସ୍ତୁତ ହେଉଛି । ସେଥିପାଇଁ ଆଉ କେତୋଟି ତଥ୍ୟ ମୋର ଦରକାର ଥିଲା ।············

ନନ୍ଦ—ଚିନ୍ତା କରନ୍ତୁ ନାହିଁ ଆପଣ । ଦୁଇଦିନ ଭିତରେ ମୁଁ ସବୁ ପଠାଇ ଦେବି···· ହଁ ଗୋପବନ୍ଧୁ ବାବୁ, କାଉନ୍‌ସିଲରେ କ'ଣ ସବୁ ଆଲୋଚନା ହେଉଛି ? ଦେଶ ମିଶ୍ରଣ, ସ୍ୱତନ୍ତ୍ର ଓଡ଼ିଆ ପ୍ରଦେଶ ଗଠନ· ବିଷୟରେ ମୁଁ ବହୁଦିନରୁ କିଛି ଜାଣିନାହିଁ······

ଗୋପ – କିନ୍ତୁ ନନ୍ଦକିଶୋରବାବୁ ! ଆପଣ ତ ସମ୍ମିଳନୀର ଜଣେ ଉଦ୍ୟୋକ୍ତା । ଗଞ୍ଜାମ ସମ୍ମିଳନୀର ଆପଣ କାର୍ଯ୍ୟକାରୀ ସଭ୍ୟ ମଧ୍ୟ ଥିଲେ । ଆଜି ଏକଥା ମୋତେ କାହିଁକି ପଚାରୁଛନ୍ତି ?

ନନ୍ଦ – ଜଣେ ସରକାରୀ କର୍ମଚାରୀ ହିସାବରେ ମୁଁ ବା ଆଉ କ'ଣ କରିପାରିବି କୁହନ୍ତୁ ? ପଣ୍ଡିତ ଦାଶ ଏବଂ ମିଷ୍ଟର ଦାସଙ୍କ ଉପରେ ମୋର ଯଥେଷ୍ଟ ବିଶ୍ୱାସ ଅଛି । ବିଚ୍ଛିନ୍ନ ଉତ୍କଳକୁ ଏକତ୍ରିତ କରିବାର ଶକ୍ତି ତାଙ୍କଠାରେ ନିଶ୍ଚୟ ରହିଛି ।

ଗୋପ—କିନ୍ତୁ ଗଞ୍ଜାମ ସମ୍ମିଳନୀରେ—"ଉଠ ମା! ଦୁଃଖିନୀ ଉତ୍କଳ ଜନନୀ ପାହିଛି ବିଷାଦ ଯାମିନୀ ତବ ।" ଲେଖି ଆପଣ ଯେଉଁ ଆଶାର ସଞ୍ଚାର କରିଛନ୍ତି ତା'ମଧ୍ୟ କମ୍ ନୁହେଁ । ତଥାପି ଏକକତା ବ୍ରିଟିଶ୍ ସରକାରଙ୍କ କୂଟନୀତି

ଆଗରେ ନିରର୍ଥକ ନନ୍ଦକିଶୋରବାବୁ । ମହାଯୁଦ୍ଧ ପରେ ବ୍ରିଟିଶ ସରକାର ଆମକୁ ଯେଉଁ ପୁରସ୍କାର ଦେଇଛନ୍ତି ସେଥିରେ ସ୍ୱାଧୀନତା ସଂଗ୍ରାମ କରିବା ଛଡ଼ା ଅନ୍ୟ ଉପାୟ ନାହିଁ । ଆଗାମୀ ଉତ୍କଳ ସମ୍ମିଳନୀ ଚକ୍ରଧର-ପୁରଠାରେ ବସୁଛି । ସେଥିରେ ସଭାପତି ହିସାବରେ ମୁଁ ଭାବୁଛି ପ୍ରକାଶ୍ୟ ଭାବରେ ସ୍ୱାଧୀନତା ସଂଗ୍ରାମ ଘୋଷଣା କରିବି । ଭାରତ ସ୍ୱାଧୀନ ନ ହେଲେ ବିଚ୍ଛିନ୍ନ ଓଡ଼ିଆଞ୍ଚଳର ଏକତ୍ରୀକରଣ ସମ୍ଭବ ନୁହେଁ ।

ନନ୍ଦ—କିନ୍ତୁ ଆପଣଙ୍କର କଳ୍ପନା ଠିକ୍ ନୁହେଁ ଗୋପବନ୍ଧୁ ବାବୁ ! ଜଣେ ଓଡ଼ିଆ କର୍ମଚାରୀ ଭାବେ କବିତା ମାଧ୍ୟମରେ ମୁହିଁ ପ୍ରଥମେ ବ୍ରିଟିଶ ସରକାରଙ୍କର ସମାଲୋଚନା କରିଛି । ତଥାପି ଯଦି ଓଡ଼ିଆପାଇଁ କିଛି ନ୍ୟାୟ ହୁଏ ତେବେ ଏହି ବ୍ରିଟିଶ ସରକାରଙ୍କ କଠୋର ନୀତି ଦ୍ୱାରା ସମ୍ଭବ । ଭାରତ ସ୍ୱାଧୀନ ହେବା ପରେ ଅନ୍ୟ ପ୍ରଦେଶର ସମସ୍ୟା ତୁଳନାରେ ଓଡ଼ିଶାର ସମସ୍ୟା ଅତି ନ୍ୟୂନ ହେଇ ପଡ଼ିବ । ସେତେବେଳେ ଆପଣ ବଙ୍ଗାଳୀଙ୍କ ହାତରୁ ମେଦିନୀପୁର ଆଉ ବିହାରୀଙ୍କ ହାତରୁ ସିଂହଭୂମ ଛଡ଼େଇ ଆଣି ପାରିବେ ନାହିଁ । ଗୋପବନ୍ଧୁ ବାବୁ, ସେଇଥିପାଇଁ ଉତ୍କଳ ସମ୍ମିଳନୀ ଭଳି ଗୋଟିଏ ଜାତୀୟ ଅନୁଷ୍ଠାନକୁ ଭାଙ୍ଗିଦେଇ ଆପଣ ବିରାଟ ଭୁଲ କରି ବସିବେ……

ଗୋପ—ସରକାରୀ କର୍ମଚାରୀ ଭାବରେ ଆପଣ ପରାଧୀନ ହେଇଛନ୍ତି ନନ୍ଦକିଶୋର ବାବୁ !

ନନ୍ଦ—ଜୀବିକା ନିର୍ବାହ ପାଇଁ ସରକାରୀ କର୍ମଚାରୀ ହେଲେ ବି ଓଡ଼ିଆ ପ୍ରାଣ ମୋର ଚିରମୁକ୍ତ……ଆତ୍ମା ମୋର ଚିର ସ୍ୱାଧୀନ ଓଡ଼ିଶା କେବେହେଲେ ଭାରତରୁ ବିଚ୍ଛିନ୍ନ ହେଇପାରିବ ନାହିଁ…ଅତିରିକ୍ତ ଓଡ଼ିଆ ହିସାବରେ ବି ମୁଁ ଗର୍ବିତ ହେବି....ତଥାପି ମୋର ଯୁକ୍ତିର ସାର୍ଥକତା ଆପଣ ସ୍ୱୀକାର ନ କଲେ ବି ଓଡ଼ିଶାର ଆଗାମୀ ଦାୟାଦମାନଙ୍କ ଆଗରେ ମୋ'ର ସତ୍ୟତା ପ୍ରମାଣିତ ହେବ…

ଗୋପ—(ଉଠିପଡ଼ି) ଚମତ୍କାର । ସ୍ୱାଧୀନ ମତ ବ୍ୟକ୍ତ କରିବାରେ ଆପଣଙ୍କର ଯଥେଷ୍ଟ ଯୋଗ୍ୟତା ରହିଛି ନନ୍ଦକିଶୋର ବାବୁ ! କିନ୍ତୁ ମୁଁ ଚାହେଁ ସ୍ୱାଧୀନତା….ତା'ପରେ ଆଉ ଯାହା କିଛି…

ଯବନିକା ।

# ତୃତୀୟ ଅଙ୍କ

## ଦୃଶ୍ୟ ଏକ

[କୁସୁପୁରର ପଞ୍ଚାମୁଣ୍ଡାଇ କେନାଲ କୂଳ । ସମୟ ଅପରାହ୍ଣ । ଗୋଟିଏ ଛକରୁ ପଶି ଆସିଲେ କୁନ୍ତଳା କୁମାରୀ । ପଛେ ପଛେ ବିମ୍ବାଧର]

କୁନ୍ତଳା—ତାଳ ନାରିକେଳ ବନ ଘେରା ଏଇ କୁସୁପୁରକୁ ମୁଁ କେବେ ଭୁଲି ପାରିବି ନାହିଁ ବିମ୍ବାଧରବାବୁ ! କି ସୁନ୍ଦର ସତେ ଏଇ ଗ୍ରାମ ! ପୂର୍ବପଟରେ ଐତିହାସିକ ପୃଷ୍ଠଭୂମି ଲଳିତଗିରି । ପଶ୍ଚିମରେ ପୁଷ୍ପଗିରି ବୌଦ୍ଧ ବିଶ୍ୱବିଦ୍ୟାଳୟର ଅତୀତ କୀର୍ତ୍ତିକୁ ନେଇ ଠିଆ ହୋଇଛି ରତ୍ନଗିରି । ନିକଟରେ ବିରୂପା ଆଉ ଆଲମଗିରିର ସବୁଜକାନ୍ତ ବନଭୂମି କବି ଆଉ ଚିତ୍ରକରର ଏକ ସାର୍ଥକ ଲୀଳାଭୂମି । ମୁଁ ଜୋର ଦେଇ କହିବି ନନ୍ଦକିଶୋର ବାବୁଙ୍କୁ ପଲ୍ଲୀକବି ହିସାବରେ ପ୍ରତିଷ୍ଠିତ କରେଇ ପାରିଛି କେବଳ ଏଇ କୁସୁପୁର.....

ବିମ୍ବା—ସେଇଥିପାଇଁ ତ ନନ୍ଦକିଶୋରବାବୁ ଗାଁକୁ ଆସିଲେ ବାହାରିବାକୁ ମୋଟେ ଇଚ୍ଛା କରନ୍ତି ନାହିଁ । ସତେ ଯେମିତି କିଏ ତାଙ୍କୁ ବାନ୍ଧି ରଖେ ଏଠି...

କୁନ୍ତଳା—ଚିରଦିନ ପାଇଁ ଏଥର ସେ ଏଇ ଗାଁ ଏଇ ମାଟିର ପାଣି ପବନରେ ବାନ୍ଧି ହୋଇ ପଡ଼ିବେ....ଜୀବନ ତାଙ୍କର ଏଥର ମୁକ୍ତ....ସେ ଓଡ଼ିଆ ସାହିତ୍ୟକୁ ଅବିଚ୍ଛିନ୍ନ ସାଧନାରେ ଉନ୍ନତ କରିବେ...ଏଇ ମୋର କାମନା –

ବିମ୍ବା—ହେଲେ ଦୃଷ୍ଟିଶକ୍ତି ହରେଇ ସେ ବଡ଼ କାତର ହୋଇ ପଡ଼ିଛନ୍ତି ।

କୁନ୍ତଳା—ସେ ତ ଜମା ମାନିବେ ନାହିଁ । ଡାଏବେଟିସ ରୋଗର ଚିକିତ୍ସା ମୋତେ ଭଲଭାବେ ଜଣା । ଖୁବ୍ କମ୍ ସମୟ ମଧ୍ୟରେ ସେ ଆରୋଗ୍ୟ ଲାଭ କରନ୍ତେ ।

ବିମ୍ବା—ତଥାପି, ସେ ଯେ ଆଜି ଗାଁରେ ଅଛନ୍ତି ସେଇ ଆମର ଗର୍ବ । ତାଙ୍କର ଏଇ ଚର୍ମଚକ୍ଷୁରେ ସେ ବାହାରର ଦୁନିଆକୁ ଦେଖି ନ ପାରିଲେ ବି

ଭିତର ଦୁନିଆକୁ ଚିହ୍ନିକରି ଖୋଜି ଅସଲ ରତ୍ନକୁ ବାହାରକୁ ଆଣି ପାରିବେ ଏ ବିଶ୍ବାସ ଆମର ଅଛି—

କୁନ୍ତଳା – (ଆନନ୍ଦରେ) ଯଥାର୍ଥ ଆପଣଙ୍କର ଯୁକ୍ତି·· ଜଣେ ଶିଳ୍ପୀ ଭାବରେ ଆପଣଙ୍କର ଏ ଅନ୍ତର୍ଦୃଷ୍ଟିକୁ ମୁଁ ସ୍ୱାଗତ କରୁଛି····ନନ୍ଦକିଶୋର ବାବୁଙ୍କର "ବିପତ୍ନୀକର ଅନୁଶୋଚନା" ପଢ଼ି ମୋର ବିଶ୍ୱାସ ହୋଇଥିଲା ଯେ ସେ ବିଗଡଦାର । କିନ୍ତୁ ଏଠିକୁ ଆସି ଯେତେବେଳେ ତାଙ୍କ ସ୍ତ୍ରୀଙ୍କୁ ଦେଖେ, ସତ କହୁଛି ବଂଶୀଧରବାବୁ ! ଜୀବନରେ ମୁଁ ସବୁଠୁ ବେଶୀ ଆଶ୍ଚର୍ଯ୍ୟ ହୋଇଗଲି । ·କି ଅପୂର୍ବ ତାଙ୍କର ଅନ୍ତର୍ଦୃଷ୍ଟି—ତାଙ୍କର ସମବେଦନା । ଜଣେ ବିପତ୍ନୀକ ବନ୍ଧୁଙ୍କର ବେଦନାକୁ ସେ ଯେପରି ଫୁଟେଇ ପାରିଛନ୍ତି ସେଇଠି ହିଁ ତାଙ୍କର କବିତ୍ୱର ଯଥାର୍ଥତା....

ବଂଶୀ—କେବଳ ବନ୍ଧୁପ୍ରୀତି ନୁହେଁ କୁନ୍ତଳା ଦେବୀ, ମଣିଷ ଚିହ୍ନିବାର ଶକ୍ତି ତାଙ୍କର ଯଥେଷ୍ଟ ରହିଛି । ଆପଣ ବୈଷ୍ଣବ ପାଣିଙ୍କ ନାମ ଶୁଣିଥିବେ···

କୁନ୍ତଳା—ନିଶ୍ଚୟ । ଗୀତନାଟ୍ୟକାର, ତାଙ୍କୁ ଓଡ଼ିଶାରେ କିଏ ନ ଜାଣେ ?····· ତା'ଛଡ଼ା ସରକାରଙ୍କର ପ୍ରତ୍ୟେକ କାର୍ଯ୍ୟକୁ ସଙ୍ଗୀତରେ ସମାଲୋଚନା କରିବାରେ ଅତି ଧୂରନ୍ଧର ଏଇ ବୈଷ୍ଣବ ପାଣି····

ବଂଶୀ – ନନ୍ଦକିଶୋରବାବୁଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ । ପ୍ରତ୍ୟେକ ଯାତ୍ରା-ଯାତ୍ରାରେ ବୈଷ୍ଣବ ପାଣିଙ୍କ ଦଳ ଡାକରା ପାନ୍ତି ଏଠୁ । Oriya Publicityର Confidential reporter ଥିବାବେଳେ ବୈଷ୍ଣବ ପାଣିଙ୍କୁ "ଗଣକବି" ଉପାଧି ଦେବାପାଇଁ ଯଥେଷ୍ଟ ଚେଷ୍ଟା କରିଥିଲେ ସିଏ । ହେଲେ ଏସ୍: ପି: ତାଙ୍କ ନାମରେ ଯେଉଁ report ଦେଲେ ସେଥିରେ ସମସ୍ତ ଚେଷ୍ଟା ତାଙ୍କର ପଣ୍ଡ ହୋଇଗଲା । ବୈଷ୍ଣବ ପାଣି ତାଙ୍କର ସଙ୍ଗୀତ ପାଇଁ 'ରାଜଦ୍ରୋହୀ' ଘୋଷିତ ହେଲେ । ଜାଣନ୍ତି କୁନ୍ତଳା ଦେବି, 'ନନ୍ଦକିଶୋର ବାବୁ ଏଇ ଦୁଃଖରେ ପାଞ୍ଚଦିନ ପର୍ଯ୍ୟନ୍ତ ଆହାର ଛାଡ଼ି ଦେଇଥିଲେ । ଇନ୍‌ସପେକ୍ଟର ଥିବାବେଳେ ଶିକ୍ଷକ ତଥା ତଳପଦସ୍ଥ କର୍ମଚାରୀମାନଙ୍କ ପ୍ରତି ତାଙ୍କର ବ୍ୟବହାର କଦାପି କେହି ଭୁଲି ପାରିବେ ନାହିଁ···

କୁନ୍ତଳା—ମୋ'ର କଥାରୁ ମୁଁ ବୁଝୁଛି ବଂଶୀଧର ବାବୁ, ପାର୍ବତୀ ଦେବୀଙ୍କ ଡିସେଣ୍ଟ୍ରି ଯେତେବେଳେ ଭଲ ହେଲା, ସେତେବେଳେ ସେ ମୋତେ ନିଜର ଝିଅ ଭଳି ପାଖକୁ ଟାଣିନେଇ କହିଲେ – 'କୁନ୍ତଳା, ତୁମରି ଯୋଗୁଁ ପାରି ମୋର ଯମ ଦୁଆରୁ ଫେରି ଆସିଲି । ତୁମର ଏ ଉପକାର ମୁଁ କ'ଣ ଦେଇ ଶୁଝିବି ? ତୁମେ ମୋର ଝିଅ···ତୁମେ ଆଉ, ଆଉସବୁ ପିଲା

ପଛ.....ମୋତେ ଅରେ ବାପା ବୋଲି ଡ଼ାକ କୁନ୍ତଳା' – ଆଖିରୁ ତାଙ୍କର ଲୁହ ଗଡ଼ି ଯାଉଥାଏ । ବାପା ବୋଲି ମୁଁ ଡାକିଲି । ସେଦିନ ସେ ଯେତେ ଖୁସି ହୋଇଛନ୍ତି ..ତାଙ୍କର ସେ ସ୍ନେହ ଡୋର ମୁଁ ଆଜିପର୍ଯ୍ୟନ୍ତ କାଟି ପାରୁନାହିଁ କି କୁସୁପୁର ଛାଡ଼ି ପାରୁନାହିଁ....

ସରସ୍ୱତୀ —(ଭିତରୁ ଡାକିଲା) ଅପା · ଅପାମ···

କୁନ୍ତଳା—ଆରେ ହାସି ପାଟିପରି ଶୁଭୁଛି ତ ! ବଂଶୀଧରବାବୁ ?

ବଂଶୀ—(ହସି ହଁ । ହାସିକୁ ଆପଣ ପ୍ରତିଦିନ ଠକାନ୍ତି । ଆଜି ସେ ଠିକ୍ ଆପଣଙ୍କ ପିଛା ଧରିଛି ··

ସର—(ଧଇଁ ସଇଁ ହୋଇ ପ୍ରବେଶ କରି କୁନ୍ତଳାଙ୍କୁ କୁଣ୍ଢାଇ ଧରି)···ହୁଁ····ଖାସି ଠକ ଅପା ତୁମେ····ସବୁଦିନେ ମୋତେ ଠକେଇ ଲୁଚି ଲୁଚି ପଳେଇ ଆସ । ଆଜି କିନ୍ତୁ ଧରିପଡ଼ି ଯାଇଛ ···ଛାଡ଼ିବି ନାହିଁ ତୁମକୁ ହୁଁ ....

କୁନ୍ତଳା—(ସ୍ନେହରେ ସରସ୍ୱତୀ ମୁଣ୍ଡରେ ହାତ ବୁଲାଇଲେ) ହାସି ଆମର ଖାସି ସୁନାପିଲି । ଅଚ୍ଛା ହାସି !

ସର—କହୁନା ! (କୁନ୍ତଳାଙ୍କର ହାତଧରି)

କୁନ୍ତଳା—ତୁମେ ତ ଚାଲି ଆସିଲ । ବାପା ଯଦି ତେଣେ କବିତା ଲେଖିବା ପାଇଁ ତୁମକୁ ଖୋଜନ୍ତି... ?

ସର—(ଖାସି ଖୁସିରେ) ନା—ନା ଆଜି ତ ମୋର ଛୁଟି । ସବୁଦିନେ ଚାରଟା ବେଳେ ବାପା ମୋତେ କବିତା ଡାକନ୍ତି । ଆଉ ତୁମେ ମୋତେ ଠକେଇ ଦେଇ ଚାଲିଆସ । ନୁହେଁ ? ଆଜି କିନ୍ତୁ ବାପା ମନା କଲେ । କିଏ ସବୁ କଟକରୁ ଆସିଛନ୍ତି ଯେ ତାଙ୍କର ସାଙ୍ଗରେ ବସି କଥା ଭାଷା ହେଉଛନ୍ତି । ଆଜି ନିଶ୍ଚୟ ବଂଶୀଧରବାବୁଙ୍କ ପାଖରୁ ଭଜନ ନ ଶୁଣି ଛାଡ଼ିବି ନାହିଁ....

କୁନ୍ତଳା—(ସାମାନ୍ୟ ଆଶ୍ଚର୍ଯ୍ୟ) ଆରେ । ବଂଶୀଧରବାବୁ ଭଜନ ବି ଗାଇ ଜାଣନ୍ତି ? ମୋତେ ତ କାହିଁକି ଏ ବିଷୟରେ କିଛି କହି ନାହାନ୍ତି ଆପଣ ।

ବଂଶୀ—(ହସି) ହାସି ମିଛ କହୁଛି ।

ସର—ହୁଁ ····ମିଛ କହୁଛି ? ନା ଅପା । ସେ ହିଁ ମିଛ କହୁଛନ୍ତି । ଖୁବ୍ ଭଲ ଗା'ନ୍ତି ସିଏ । ବାପାଙ୍କ ପାଖରେ ବସି ବୋଲିବା ବେଳେ ମୁଁ କେତେଥର ଶୁଣିଛି···

କୁନ୍ତଳା—ନା—ନା ଏ ଆପଣଙ୍କର ବଡ଼ ଅନ୍ୟାୟ ବଂଶୀଧରବାବୁ । ମୋତେ ଆପଣ ଠକି ଦେଇଛନ୍ତି····

ବଂଶୀ—ଆପଣଙ୍କୁ ଠକି ଦେବାର ସାହସ ମୋର ନାହିଁ···

କୁନ୍ତଳା – ବେଶ୍ । ସାହସ ଯଦି ନାହିଁ, ତେବେ ସୁନା ପିଲଟି ପରି ଫେରି ଚାଲନ୍ତୁ ଘରକୁ । ସନ୍ଧ୍ୟାବେଳେ ଭଜନ ଗାଇ ଶୁଣାଇବେ···

ସର—ନା ଅପା, କେତେ ଦିନକେ ମୁଁ ଛୁଟି ପାଇଛି, ଆଜି ନଈକୂଳକୁ ବୁଲିଯିବା ।
ନଈ ବାଲିରେ ବସି ବିମ୍ବାଧରବାବୁ ଭଜନ ଗାଇବେ । ଶୁଣିବାକୁ ବେଶ୍
ଭଲ ଲାଗିବ ।

କୁନ୍ତଳା – ବାଃ, କବିତା କପି କରୁ କରୁ ତୁମେ ବି କବି ହେଇ ଗଲଣି ହ୍ୱାଶ ।
ଖରାଦିନ ସଞ୍ଜବେଳେ ନଈବାଲିରେ ବସି ଭଜନ ଶୁଣିବାର କଳ୍ପନା
ତୁମର ମନ୍ଦ ନୁହେଁ···     (ଦୁହେଁ ହସିଲେ)

ସର—(ଲାଜରେ) ଉଁ···ଖାଲି ଜଣେ···ତମେ ଆଉ କୋଉ ଭଲ କି ?

ବିମ୍ବା—ହ୍ୱାଶ ଠିକ କହୁଛି । ଆସନ୍ତୁ କୁନ୍ତଳା ଦେବୀ । ହ୍ୱାଶକୁ ଆପଣ ପାରିବେ
ନାହିଁ...

(ସେମାନେ ଯାଉଥିବା ସମୟରେ ସୂର୍ଯ୍ୟମଣି ·ବ୍ୟସ୍ତଭାବେ ପ୍ରବେଶ କରେ)

ସୂର୍ଯ୍ୟ—ଆରେ, ଆପଣମାନେ ସବୁ ଏଇଠି । ଅଥଚ ମୁଁ ଖୋଜି ଖୋଜି ହାଲିଆ
ହେଇ ପଡ଼ିଲି····

ବିମ୍ବା—କ'ଣ ହେଇଛି କି ସୂର୍ଯ୍ୟମଣି ବାବୁ !

ସୂର୍ଯ୍ୟ—ଜାଣିନା ବିମ୍ବାଧର, (ଆନନ୍ଦରେ ଅଧୀର ହେଇ)

ବିମ୍ବା—କ'ଣ ମୁଁ ଜାଣିବି ?

ସୂର୍ଯ୍ୟ – ନନ୍ଦକିଶୋର ବାବୁଙ୍କୁ ସରକାର 'ରାୟସାହେବ' ଉପାଧି ଦେଇଛନ୍ତି...

କୁନ୍ତଳା – ଚମତ୍କାର ! ଆପଣ ସତ କହୁଛନ୍ତି ସୂର୍ଯ୍ୟମଣି ବାବୁ !

ସୂର୍ଯ୍ୟ – ଆପଣଙ୍କୁ କ'ଣ ଆଉ ମିଛ କହିବି ? ସରକାରୀ କର୍ମଚାରୀମାନେ ତ ଏଇ
ଅଧଘଣ୍ଟା ଆଗରୁ ଆସି ପହଞ୍ଚିଛନ୍ତି ··

କୁନ୍ତଳା—ହ୍ୱାଶ ତେବେ ସତ କହୁଥିଲା ! ନୁହେଁ ବିମ୍ବାଧରବାବୁ ଆଜି ଆମର
କି ସୌଭାଗ୍ୟ ! ଚାଲନ୍ତୁ ସୂର୍ଯ୍ୟମଣି ବାବୁ ।

(ବିମ୍ବାଧର ଯେପରି କିଛି ଭାବୁଥିଲେ)

ସୂର୍ଯ୍ୟ—କ'ଣ ତୁମେ ଭାବୁଛ ବିମ୍ବାଧର ?

ବିମ୍ବା—ଏଁ ...ହଁ ଭାବୁଥିଲି କଲା ଥିଲେ ହୁଏତ···

କୁନ୍ତଳା—(ବୁଝି ନ ପାରି) କ'ଣ କହିଲେ ବିମ୍ବାଧରବାବୁ ?

ବିମ୍ବା—ନା—ନା, ସେ କିଛି ନୁହେଁ । ଆପଣମାନେ ଚାଲନ୍ତୁ । ଆଜି ଆମର କି
ସୌଭାଗ୍ୟ । ନନ୍ଦକିଶୋର ବାବୁ ହେଇଛନ୍ତି ରାୟସାହେବ !

( ପିଲଙ୍କ ପରି ନାଚି ·ନାଚି ଚାଲିଗଲେ । କୁନ୍ତଳା କୁମାରୀ, ସୂର୍ଯ୍ୟମଣି ଓ
ସରସ୍ୱତୀ ହସିଉଠିଲେ ଆନନ୍ଦରେ)

ପଟ କ୍ଷେପ

## ଦୃଶ୍ୟ ଦୁଇ

[ କୁସୁପୁରର ନନ୍ଦକିଶୋର ବାବୁଙ୍କ ବାସଭବନ । ସମ୍ଭ୍ରାନ୍ତ ସାଜସଜ୍ଜା । ଧୀରେ ଧୀରେ ଗୋଟିଏ ପାଖରୁ ଆସିଲେ ନନ୍ଦକିଶୋର । ସେ ବୃଦ୍ଧ । ସମ୍ପୂର୍ଣ୍ଣ ବୃଦ୍ଧ ନ ହେଲେ ବି ଦୃଷ୍ଟିଶକ୍ତି ତାଙ୍କର ଯଥେଷ୍ଟ କମିଯାଇଛି ]

ନନ୍ଦକିଶୋର—(ଆସୁ ଆସୁ)

ଭାରତି ! ତବ ପଦାରବିନ୍ଦେ ମନ୍ଦ ଆଜି ବନ୍ଦେ,
ବନ୍ଦିଥିଲଇଁ ପଦାରବିନ୍ଦେ ବି ସୁନ୍ଦର ଛନ୍ଦେ ।
ଅନ୍ଧ ହେଲଇଁ ମନ୍ଦିର ମେଲେ ମନ୍ଦିରୁ ଗଲି ଦୂରେ,
ସୁନ୍ଦର ଛନ୍ଦ ହୃଦ ମନ୍ଦିରେ ଆଉ ତ ନାହିଁ ସ୍ଫୁରେ ।

—ନାଃ, ହୃଦୟ ମୋର ରୁଦ୍ଧ । କବିତାର ଛନ୍ଦ ଆଜି ଆଉ ମୋର ମନେ ପଡ଼େ ନା····ମନେପଡ଼େ ଆଷାଢ଼ର ପ୍ରଥମ ପ୍ରଭାତରେ ଲେଖିଥିଲି 'ପ୍ରଭାତ-ସଙ୍ଗୀତ' ଆଉ ଆଜି ଜୀବନର ଶେଷ ସନ୍ଧ୍ୟାରେ ଲେଖିଲି 'ସନ୍ଧ୍ୟା ସଙ୍ଗୀତ'··· ଉତ୍କଳ ଭାରତୀର ପଦାରବିନ୍ଦରେ ଏଇ ମୋର ଶେଷ ଅର୍ଘ୍ୟ....ହଁ, ଏଇ ମୋର ଶେଷ ଅର୍ଘ୍ୟ···କୁଆଡ଼େ ଗଲ ରେ ସବୁ···ପାରି ବୋଉ····ନା—ନା ଆଜି ତୁମକୁ ମୁଁ କୋକିଳ ବୋଲି ଡାକିବ···କୋକିଳ, କୋକିଳ··

କୋକିଳ—(ପ୍ରବେଶ) କାହିଁକି ତମେ ଏମିତି ହଉଛ କହିଲ ? ସବୁବେଳେ ଖାଲି ଅନ୍ଧ ଅନ୍ଧ ବୋଲି କହି ତୁମେ କ'ଣ ଆନନ୍ଦ ପାଉଛ ?

ନନ୍ଦ—(ହସି) ନାଃ, ତୁମେ ରାଗିଲ କୋକିଳ ! କିଛି ଚିନ୍ତାକର ନାହିଁ । ଦୃଷ୍ଟି-ଶକ୍ତି ଫେରେଇ ଆଣିଲେ ମଧ୍ୟ ମୋର ଆଉକିଛି କରିବାର ଶକ୍ତି ନାହିଁ .. ହଁ କୋକିଳ; ମୁଁ ଦିନେ ତୁମକୁ ଇଂରେଜ କବି ମିଲ୍‌ଟନ୍‌ଙ୍କ କଥା କହୁଥିଲି ପରା ? ତମର ବୋଧହୁଏ ମନେ ନାହିଁ । ମିଲ୍‌ଟନ୍ ସମ୍ପୂର୍ଣ୍ଣ ଭାବରେ ଦୃଷ୍ଟିଶକ୍ତି ହରେଇଥିଲେ । କିନ୍ତୁ ସୁଖର କଥା ଯେ ତାଙ୍କ ସ୍ତ୍ରୀ ଆଉ ତୁମ ଭିତରେ ଯଥେଷ୍ଟ ପ୍ରଭେଦ । ସେ ସୁସଭ୍ୟ ଇଂଲଣ୍ଡ ଦେଶର ଜଣେ ମହିଳା । ଆଉ ତୁମେ ଭାରତବର୍ଷର ସବୁଠାରୁ ଅନୁନ୍ନତ ଏଇ ଓଡ଼ିଶାର ଜଣେ ଗାଉଁଲିବୋହୂ । ଆଉ ସେଥିପାଇଁ ତୁମେ ମୋ ପ୍ରତି ସହାନୁଭୂତି ପ୍ରକାଶ କରିପାରୁଛ·····ଅରେ ଜଣେ ଭଦ୍ରଲୋକ ମିଲ୍‌ଟନଙ୍କ

ପାଖରେ ତାଙ୍କ ସ୍ତ୍ରୀଙ୍କର ପ୍ରଶଂସା କରୁଥିଲେ । ସେ ପ୍ରଶଂସା ଶୁଣି ମିଲ୍ଟନ୍ କହିଲେ କଣ୍ଟାର ତୀକ୍ଷ୍ଣ ଆଘାତରୁ ଜାଣୁଛି ଗୋଲପ ଫୁଲଟି ନିଶ୍ଚୟ ସୁନ୍ଦର ହୋଇଥିବ । କୋକିଳ, ତୁମକୁ ମୁଁ ଭଲକରି ଦେଖିପାରୁ ନାହିଁ । ଏଇ ଓଡ଼ିଶାର ଚମ୍ପା ଫୁଲ ତୁମେ । ଏଠି ବିଲାତର ସେ ଗୋଲପ ଫୁଲ ନାହିଁ କି ତା'ର କଣ୍ଟା ମଧ୍ୟ ନାହିଁ । ଏଇଟା ମୋ ପକ୍ଷରେ ଖୁବ୍ ଗୋଟାଏ ବଡ଼ ସାନ୍ତ୍ୱନା । ହଁ କୋକିଳ, କୃଷ୍ଣ, ବସନ୍ତ, ଲକ୍ଷ୍ମୀ ସବୁ ଘରେ ଅଛନ୍ତି ତ ?

କୋକିଳ—ସବୁ ଘରେ ଅଛନ୍ତି । ତମେ ଏମିତି ବ୍ୟସ୍ତ ହୁଅନାହିଁ । ମୁଁ ଯାଉଛି ହାରିକୁ ଡାକଦେବି । ତମେ ତାକୁ କବିତା ଡାକିବ ।

ନନ୍ଦ—ହଁ—ହଁ, ତୁମେ ହାରିକୁ ଡାକିଦିଅ କୋକିଳ । 'ସନ୍ଧ୍ୟା ସଙ୍ଗୀତ'ରେ ମୁଁ ଆଜି ଶେଷ ରାଗିଣୀ ଦେବି । ( କୋକିଳ ଚାଲିଗଲେ )

ବେଳକୁ ବେଳ ହୃଦସ୍ପନ୍ଦ ମୋର ରୁଦ୍ଧ ହୋଇ ଆସୁଛି । ହଠାତ୍ ହୁଏତ ହୃଦସ୍ପନ୍ଦର ଗତି ବନ୍ଦ ହୋଇଯିବ...

( ଗୋଟିଏ ଏକତାରା ଧରି ବଂଶୀଧର ଆସିଲେ )

କିଏ; ବଂଶୀଧର ? ହାତରେ ତୁମର ସେଇଟା କ'ଣ ? ଓ, ଏକତାରା ପରା ! ବେଶ୍ ବେଶ୍ । ହୃଦସ୍ପନ୍ଦରୁ ମୋର ଛନ୍ଦ ହଜି ଯାଉଥିବା ବେଳେ ଭଜନ ଗୋଟିଏ ଗାଇ ମୁହୂର୍ତ୍ତିକ ପାଇଁ ହେଲେ ତାକୁ ଫେରେଇ ଆଣ.........

ବଂଶୀ—ଆପଣଙ୍କର କ'ଣ ହୋଇଛି ନନ୍ଦକିଶୋରବାବୁ ! ଗାଁରେ ରହିବା ଦିନୁଁ ତ ମୁଁ ଆପଣଙ୍କୁ ଏମିତି ଚଞ୍ଚଳ ହେବାର ଦେଖି ନ ଥିଲି...

ନନ୍ଦ—ମୋର କିଛି ହୋଇନି ବଂଶୀଧର । ତୁମଭଳି ଗାଁର ଆଉ କେତେଜଣଙ୍କୁ ଦେଖି ମୋର ଗର୍ବ ହେଉଛି । ଭାବିଥିଲି କର୍ମଜୀବନରୁ ଅବ୍ୟାହତି ପାଇ ତୁମ ସହିତ ମୁଁ ସହଯୋଗ କରିବି । କିନ୍ତୁ ଦୁଃଖର କଥା ଯେ ଗାଁକୁ ଫେରିବା ବେଳେ ମୁଁ ସମ୍ପୂର୍ଣ୍ଣ ଅସମର୍ଥ....କାହାରି ପାଇଁ କିଛି କରିବାର ଶକ୍ତି ମୋର ନାହିଁ...

ବଂଶୀ—ଆରେ ଆପଣ ଠିଆ ହୋଇଛନ୍ତି କାହିଁକି ନନ୍ଦକିଶୋରବାବୁ ! ଚାଲନ୍ତୁ ମୁଁ ଆପଣଙ୍କୁ ବସେଇ ଦେଉଛି । (ହାତଧରି ଗୋଟିଏ ଚେୟାର୍‌ରେ ବସେଇ ଦେଲେ, ନିଜେ ମଧ୍ୟ ବସିଲେ) ଆମର କାହାରି କିଛି ଦରକାର ନାହିଁ । ଆପଣ ଗାଁରେ ଅଛନ୍ତି ସେଇ ଆମର ଗର୍ବ ।

ହରି – (ପଶିଆସି) ବାପା ! କଲମ ଆଣିଛି । କ'ଣ ଲେଖିବ ?

ନନ୍ଦ—କଏ ହାରି ? ତୁ ଟିକଏ ରହ ମା ! ବଂଶୀଧର ଭଜନ ଗାଇବ । ଆଉ ତା'
ପରେ ମୁଁ କବିତା ଡକିବ । କୁନ୍ତଳା ଅପାକୁ ଡାକଦେଲୁ । ବଂଶୀଧର
ଭଜନ ଶୁଣିବାକୁ ତା'ର ଭାରି ମନ……

ହର - ହଉ । (ଖାତା ଏବଂ କଲମ ଟେବୁଲ ଉପରେ ରଖିଦେଇ ଭିତରକୁ ଗଲା
ଡାକ ଡାକ) ଏ କୁନ୍ତଳା ଅପା…ବଂଶୀଧର ବାବୁଙ୍କ ଭଜନ ଶୁଣିବ
ଆସ…

(ବଂଶୀଧର ଏକତାରା ଟୁଂ ଟାଂ କରି ଗଳା ବାଗେଇଲେ, ଭିତରୁ ଆସିଲେ
କୁନ୍ତଳା ହାରି ସହିତ)

କୁନ୍ତଳା—ମୋତେ ଡାକୁଥିଲେ ବାପା !

ନନ୍ଦ—ହେଇ ମା ମୋର ଆସିଲଣି ! ହଁ ମା ଶୁଣିବା ପାଇଁ ତ କହୁଛୁ । ତୋର
ସେବାପାଇଁ ଆଉର କେତେ ଗୃହିଁ ବସିଛନ୍ତି ...ହେଲେ ତୋ କଥା ମୁଁ
ଭୁଲ ପାରବ ନାହିଁ (ଅଧୈର୍ଯ୍ୟ ହେଇ ପଡ଼ିଲେ)

କୁନ୍ତଳା—(ତାଙ୍କ ପାଖକୁ ଯାଇ ତାଙ୍କ ମୁଣ୍ଡରେ ହାତ ବୁଲାଇଲେ) ଆପଣ ଏତେ
ଅଧିର ହୁଅନ୍ତୁ ନାହିଁ ବାପା ! ଯେଉଁଠି ଥିଲେ ବି ଆପଣଙ୍କର ଏଇ ମମତା
ମୋର ହୃଦୟରେ ସବୁବେଳେ ଲାଗିରହିଥିବ....ହାରି, ସୁନାଟା ପରି,
ବାପାଙ୍କୁ ବିଞ୍ଚିଦିଅ....

(ହାରି ଟେବୁଲ ଉପରୁ ପଙ୍ଖାଟିଏ ନେଇ ନନ୍ଦକିଶୋର ବାବୁଙ୍କୁ ପଙ୍ଖା
କଲା, ବଂଶୀଧର ଗାଇଲେ)

ଭାଗବତୀ ଭାରତୀ ତବ ଚରଣ ତଳେ,
ବିକଶିତ ମାନସ କମଳ ଦଳେ
ମଧୁମୟ ଉତ୍ସବ-ଦୀପ ଜଳେ
ଜୟ ଜୟ ଭାରତୀ ଦେବୀ…… । ୦ ।
ଋଷିଗଣ କବିଗଣ ପ୍ରାଣ ସମାଜେ
ଜନନୀ ବାଣି, ତବ ଆସନ ରାଜେ
ବିଶ୍ୱମୋହିନୀ ତବ ବୀଣା-ବାଣି
ଜୟ ଜୟ ଭାରତୀ ଦେବୀ…… । ୧ ।
ଶ୍ରୁତି ଇତିହାସ ନାଟକ କାବ୍ୟମାଳା
ଦର୍ଶନ ବିଜ୍ଞାନ ତବ କୀରତି ଅମଳା
ଗୌରବେ ପୂର୍ଣ୍ଣ ସୌରଭେ ସଦା ବିମଳା
ଜୟ ଜୟ ଭାରତୀ ଦେବୀ…… । ୨ ।

ଭାରତ ଅନ୍ତର ଦୀପିତ କର ତବ କରଣେ
ଅମୃତ ସ୍ପନ୍ଦ ତବ କରଚରଣେ
ନିଅ ଭାରତେ ତବ ଧ୍ରୁବ ସତ୍ୟ ଗଗନେ
ଜୟ ଜୟ ଭାରତୀ ଦେବୀ...... । ୩ ।

(ନନ୍ଦକିଶୋର ହଠାତ୍ ବିଚଳିତ ଭାବରେ କହି ଉଠିଲେ—)

ନନ୍ଦ – ମା ହାରି, କୁଆଡ଼େ ଗଲୁ ମା । ଖାତା ଖୋଲି ଲେଖ । ମୁଁ ଡାକୁଛି । ଆଉ ମୁହୂର୍ତ୍ତିକ ପରେ ହୁଏତ ଭାବନା ମୋର ରୁଦ୍ଧ ହୋଇଯିବ । ଯେଉଁ ସରସ୍ୱତୀଙ୍କ କୃପାରୁ ଯେ ଯେ ମୁଁ ପାଇଥିଲି ତୁଇ ଆଜି ସେଇ ସରସ୍ୱତୀଙ୍କୁ ନିଜ ହାତରେ ବିଦାୟ କରଦେ । କିନ୍ତୁ କିନ୍ତୁ ଏ ବିଦାୟ ଯେପରି ସର୍ବକାଳୀନ ନ ହେଉ...ଏ ବିଦାୟ ହେଉ ପୁନରାଗମନୀୟ.....ହଁ...ହଁ ଲେଖ ।

ସର—(ଖାତା ଖୋଲି) ଡାକନ୍ତୁ ବାପା !

ନନ୍ଦ—(ଡାକଲେ । ସରସ୍ୱତୀ ଲେଖିଲା)
କେଉଁ କବିତା ମୁଁ ଲେଖିବି କିଏ ବାଛି ନେବଉଁ,
କି ଚିର ସୌଭାଗ୍ୟ ମୋ ଭାଗ୍ୟେ ଅଛି ଭବିଷ୍ୟ ରହି ।
କେଉଁ କାବ୍ୟ ଲେଖି କ୍ଷୁଦ୍ର ଏ ମୋର କବି ଜୀବନ,
ଚରିତାର୍ଥ ହେବ ଜାଣିବା ପାଇଁ ଉଦ୍‌ବିଗ୍ନ ମନ ।
ପ୍ରାଣରେ ଅବ୍ୟକ୍ତ ଆବେଗ ଉଠୁଅଛି କିମ୍ବୃତ,
ଯେତେ ଜଳଉଠେ ଯେ ବହ୍ନି ଯେତେ କରେ ଫମ୍ପତ ।
ଜାଣେ ମୁଁ ଜୀବନ-ଉଦ୍ଦେଶ୍ୟ ମୋର ଏହି ଲେଖନୀ,
ମୃତ୍ୟୁ ପରେ ମନେ ରଖିବ କିଛିଦିନ ଧରଣୀ ।
ଏ ମୋର ପରାଣ କାମନା ହେଲେ ହେବ ସଫଳ,
ନ ହେଲେ ମୋ ଜନ୍ମ ଧରାରେ ହୋଇଯିବ ବିଫଳ ।

(ନନ୍ଦକିଶୋର ହଠାତ୍ ବନ୍ଦ ହୋଇଗଲେ)

ସର—ଡାକନ୍ତୁ ବାପା !

ନନ୍ଦ—ନାଃ, ଆଉ ନୁହେଁ, ବାପା ତୋର ଆଉ କବିତା ଡାକି ପାରିବ ନାହିଁ । ହୃଦୟ ତା'ର ଚିରଦିନ ପାଇଁ ରୁଦ୍ଧ ହୋଇଯାଇଛି । ସେଇ ରୁଦ୍ଧ ହୃଦୟର ଦ୍ୱାରରେ ବସନ୍ତର ମଳୟ, କୋକିଳର କୁହୁତାନ ଧକ୍କା ପାଇ ଫେରିଯିବ । ତୁ ଯା—ଘରକୁ ଯା ମା !

(ବିମ୍ବାଧର ନୀରବରେ କାନ୍ଦୁଥିଲେ)

କୁନ୍ତଳା – ଆପଣ ଏସବୁ କ'ଣ କହୁଛନ୍ତି ବାପା ! ଆପଣ ଆଉ କବିତା ଲେଖି-
ପାରିବେ ନାହିଁ ? କିଏ କହିଲା ଆପଣଙ୍କୁ ଏକଥା ? (କାନ୍ଦି ଉଠିଲେ)

ନନ୍ଦ – (ହସିଲେ । ସେ ହସ ତାଚ୍ଛଲ୍ୟର) ମା ! ପାଗଳୀ ହେଲୁ କି ତୁ ? ମୁଁ ଯେଉଁ
ଅଭାବକୁ ଅପୂର୍ଣ୍ଣ ରଖି ଦେଇଗଲି ସେଇ ଅଭାବକୁ ପୂର୍ଣ୍ଣ କରିବା ପାଇଁ ପରା
ତୋ ଉପରେ ଦାୟିତ୍ୱ ଦେଇଗଲି ? ଆଉ ପୁଣି କାହିଁକି ? ଛି, କାନ୍ଦନା ।
ଯା, ହସଖୁସିରେ ତୁ ମୋ ପାଖରୁ ବିଦାୟ ନେଇ ଯା – ତୁ କାନ୍ଦିଲେ
ମନ ମୋର ଶାନ୍ତି ପାଇ ପାରିବ ନାହିଁ ।

କୋକିଳ—(ଭିତରୁ) କୁନ୍ତଳା.....ହାରିକୁ ନେଇ ଆସିଲୁ ମା ଏଣେ ଟିକିଏ ..

ନନ୍ଦ – ଏଇ କୁନ୍ତଳା, ହାରି, ତୁମେ ସବୁ ଯାଅ ମା—ତେଣେ ବୋଉ ଡାକିଲାଣି .
(କୁନ୍ତଳା ଓ ହାରି ଚାଲିଗଲେ ଧୀର ପଦରେ)

ବିମ୍ବା—'ଠିଆ ହେଲେ) ମୁଁ ମଧ୍ୟ ଯାଉଛି ନନ୍ଦକିଶୋରବାବୁ !

ନନ୍ଦ—ବିମ୍ବାଧର ! ତୁମେ ଯିବ ? ହଁ ଯାଅ । କିନ୍ତୁ ତୁମ ପାଖରେ ମୁଁ ଗୋଟାଏ
ଦୋଷ କରିଛି । 'ମୋଗଲ ମହାନାୟକ'ଙ୍କୁ ନେଇ ନାଟକ ଲେଖିବା
କଳ୍ପନା ମୋର ଆଉ ସଫଳ ହେଇପାରିଲା ନାହିଁ....ଆଲମଗିର ଗଡ଼ର
ଇତିହାସ ମୋତେ ଖୁବ ଭଲ ଲାଗେ । ମୁଁ ସେଠିକି ପୁଅ ହେଇ ଯାଇଥିଲି
କିନା ? ହେଲେ ବିମ୍ବାଧର, ଶେଷକୁ ଆଲମଗିର ଆଉ କୁସୁପୁରର
ଆଭିଜାତ୍ୟ ଏକ ହେଇ ମୋତେ ପଥଭ୍ରଷ୍ଟ କରିଦେଲା । ଜୀବନର ଶେଷ
ମୁହୂର୍ତ୍ତରେ ମୁଁ ଗୋଟାଏ ଜମିଦାରୀ କିଣି ପକେଇଥିଲି । ...

ରଘୁ ବାନା—(ପୁଳାଏ କାଗଜ ଧରି ପ୍ରବେଶ କରି) ଜୁହାର ଆଜ୍ଞା !

ନନ୍ଦ—କିଏ ରଘୁବାନା ? ପୁଣି କାହିଁକି ତୁମେ ଆସିଲ...ମୋତେ ରଖେଇ
ଦେବେନି ଏମାନେ...ଜୀବନସାରା କର୍ମରେ ବୁଡ଼ିରହି ଭାବିଥିଲି ଶେଷ
ଜୀବନ ଶାନ୍ତିରେ କାଟିବି । କିନ୍ତୁ ଶାନ୍ତିରେ ମରିବାକୁ ଦେବେନି ଏମାନେ ।
ତୁମେ ଯାଅ ବିମ୍ବାଧର, ଠିଆ ହେଲ କାହିଁକି ?
(ବିମ୍ବାଧର ସ୍ଖଳିତ ପଦରେ ଚାଲିଗଲେ)

ରଘୁ – ଆଜ୍ଞା, ଜମିଦାରୀ ଦଖଲ କରିବାକୁ ହଜାରେ ଟଙ୍କା ଲାଗିବ ।

ନନ୍ଦ—କ'ଣ କହୁଚ ତୁମେ ରଘୁବାନା ? ପଚିଶ ହଜାର ଟଙ୍କା ଦେଇ ଜମିଦାରୀ
କିଣିଲି । ସେଥିରେ ପୁଣି ଦଖଲ କରିବାକୁ ଆହୁରି ହଜାରେ ଟଙ୍କା ?
(ଉତ୍ତେଜିତ ହୋଇ) ନା-ନା ଦରକାର ନାହିଁ ମୋର ସେଇ ଜମିଦାରୀରେ !
ତୁମେ ଯାଅ ରଘୁବାନା – ଚାଲିଯାଅ ..ଏତେ ଟଙ୍କା ଖରଚ କରି ମୁଁ
ଜମିଦାରୀ ଦଖଲ କରି ପାରିବି ନାହିଁ ।

ରଘୁ—(ବିନୟସ୍ୱରେ) ଆଜ୍ଞା ଜମିଦାରୀ ସିନା ଦଖଲ ହେବ ନାହିଁ । ହେଲେ ଏ ଯେଉଁ ଚାରଶ ଟଙ୍କାର ହେଣ୍ଡନୋଟ୍ ଗୁଡ଼ା ଆଉ ପାଞ୍ଚଦିନ ଭିତରେ ତମାଦି ହେଇଯିବ···

ନନ୍ଦ - (କ୍ରୁଦ୍ଧ ହେଇ) କ'ଣ କରୁଥିଲ ତୁମେ ଏଯାକେ ?

ରଘୁ—ଆଜ୍ଞା, ଦଉଡ଼ି ଦଉଡ଼ି ଥକିଲିଣି । ଟଙ୍କା ମାଗିବାରୁ କହୁଛନ୍ତି ନାଲିଶ କର ।

ନନ୍ଦ—ଏଁ, କ'ଣ କହିଲ ? କହୁଛନ୍ତି ନାଲିଶ କର ? ବେଶ୍ ମୋତେ ଦେଇଦିଅ ସେ ହେଣ୍ଡନୋଟ୍ ଗୁଡ଼ା । ମୁଁ ଆଦାୟ କରିଦେବି ତାଙ୍କଠାରୁ ଟଙ୍କା··· ହାଃ...ହାଃ....

ସର—(ଭିତରୁ) ଯାଉଛି ବାପା ! ···

ନନ୍ଦ—ଗୋଟାଏ ଦିଆସିଲି ଆଣିଲୁ ମା ! ···

(ଉତ୍ତେଜନାରେ ଉଠି ଆସୁ ଆସୁ ଚେୟାରରେ ଧକ୍କା ଲାଗି ପଡ଼ି ଯାଇଥା'ନ୍ତେ, ଅଳ୍ପକେ ସମ୍ଭାଳି ନେଇ ଚାଲି ଆସିଲେ ରଘୁବାନା ପାଖକୁ । ରଘୁବାନା କିଛି ଗୋଟାଏ ବିପଦର ଆଶଙ୍କା କରୁଥାଏ । ସରସ୍ୱତୀ ଦିଆସିଲି ଆଣି ନନ୍ଦକିଶୋରଙ୍କୁ ଦେଲା । ) ବେଶ୍···ତୁ ଯା ପଢ଼ିବୁ ଯା ମା ! (ସରସ୍ୱତୀ ଚାଲିଗଲା) ହୁଁ ଦିଅ, ଦିଅ, ରଘୁବାନା ସେ ହେଣ୍ଡନୋଟ୍ ଗୁଡ଼ା....

ରଘୁ—କିନ୍ତୁ···

ନନ୍ଦ – ନା-ନା ତୁମେ ମୋତେ ସେଗୁଡ଼ା ଦିଅ ମୁଁ କହୁଛି । ଟଙ୍କା ଆଦାୟର ଉପାୟ ମୁଁ କରିବି । ତୁମେ ନିଶ୍ଚିନ୍ତ ରୁହ ।

(ରଘୁବାନା କାଗଜଗୁଡ଼ା ଦେଇଦେଲା । ନନ୍ଦକିଶୋର ସେଥିରେ ଅଗ୍ନି ସଂଯୋଗ କଲେ)

ରଘୁ—(ବ୍ୟସ୍ତ ହେଇ) ଏ କ'ଣ କଲେ ଆପଣ ? ଚାରଶହ ଟଙ୍କାର ହେଣ୍ଡନୋଟ ଜାଳିଦେଲେ ?

ନନ୍ଦ—(ବିଦ୍ରୂପର ହସ ହସି) ପ୍ରାୟଶ୍ଚିତ୍ତ ! ରଘୁବାନା, ଏ ପ୍ରାୟଶ୍ଚିତ୍ତ ଯେଉଁ ଆଭିଜାତ୍ୟ ମୋତେ ପଥଭ୍ରଷ୍ଟ କରିଛି ସେଇ ଆଭିଜାତ୍ୟ ଏମିତି ଜଳି-ପୋଡ଼ି ଛାରଖାର ହେଇଯାଉ ହା-ହା-ହା····

**ପଟ କ୍ଷେପ**

## ଶେଷ ଦୃଶ୍ୟ

[କୁସୁପୁରର ନନ୍ଦକିଶୋରଙ୍କର ପୂର୍ବର ସେଇ ବାସଭବନ । ନନ୍ଦକିଶୋର ରୋଗଶଯ୍ୟାରେ । ନିକଟରେ ବସିଥାନ୍ତି କୋକିଳ]

ନନ୍ଦ – ଏଥର ମୋର ପ୍ରିୟ ପଲ୍ଲୀରୁ ମୁଁ ବିଦାୟ ନେବି....କୋକିଳ ! ଏ ଜୀବନ ମୋର ଶେଷ ହୋଇଗଲା ଏତିକିରେ···ପାପ ଆଉ ତାପ ଭିତରେ ରହିଲେ । ହେଲେ କୃଷ୍ଣ, ବସନ୍ତ, ହେମନ୍ତ, ଲକ୍ଷ୍ମୀ ତୁମକୁ ଲାଗିଲେ । ଶେଷ ମୁହୂର୍ତ୍ତରେ ମୁଁ ଯେମିତି ଶାନ୍ତିରେ ନିଃଶ୍ୱାସ ନିଏଁ (ବାହାରେ କୋକିଳ ରାବିଲା)···ହେଇ କୋକିଳ, ଶୁଭୁଛି ତୁମକୁ କୋଇଲିର ଡାକ ? ଏଇମିତି ଗୋଟାଏ ବସନ୍ତରେ ମୁଁ କୋଇଲିର ଡାକ ଶୁଣି ଲେଖିଥିଲି 'ବସନ୍ତ କୋକିଳ'···କିନ୍ତୁ ଆଜି ଆଉ ଏ କୋକିଳର ଧ୍ୱନି ମୋର ରୁଗ୍ଣ ହୃଦୟରେ କବିତାର ଉଚ୍ଛ୍ୱସିତ ଭାବ ଆଣି ପାରୁନି···ମୁଁ ନୀରବ ବସନ୍ତ ! ଚିରଦିନ ପାଇଁ ଲେଖନୀ ମୋର ନୀରବ···

କୋକିଳ – (ବାଷ୍ପରୁଦ୍ଧ କଣ୍ଠରେ) କାହିଁକି ତୁମେ ଏମିତି ହଉଛ କହିଲ ? ଡାକ୍ତର କହିଛନ୍ତି ଚିନ୍ତା କରିବାର କିଛି ନାହିଁ····ବେଶୀ ଚିନ୍ତା କଲାରୁ ତୁମ ଦେହ ଭାଙ୍ଗି ପଡ଼ୁଛି....ତମେ ଯଦି ଏମିତି ହବ ଆମେ ରହିବୁ କେମିତି କହିଲ ?

ନନ୍ଦ—ସତେ କୋକିଳ ! ମୁଁ ଭୁଲ କହିଦେଲି । ଶେଷ ମୁହୂର୍ତ୍ତ ମୋର ଏବେ ବି ବହୁ ଦୂରରେ । ତଥାପି ସବୁବେଳେ ଦୂରକୁ ଚାହିଁବା ମୋର ଗୋଟାଏ ବଦଭ୍ୟାସ ହୋଇ ଯାଇଛି···ତେବେ ବି ମୃତ୍ୟୁ ମୋର ସୁନିଶ୍ଚିତ କୋକିଳ ଆଉ ସେଇ ମୃତ୍ୟୁକୁ ଶାନ୍ତିରେ ଆସିବାକୁ ଦେବି ମୁଁ । ମନେ ପଡ଼ୁଛି "ପଲ୍ଲୀଚିତ୍ର"ର କେଇଧାଡ଼ି କବିତା—"ଶାନ୍ତିପୂର୍ଣ୍ଣ ଆରେ ପଲ୍ଲୀଗ୍ରାମ, ମଧୁରିମାମୟ ତୋର ନାମ । ନଗରର ରାଜସୁଖ ମୋହ ପକ୍ଷେ ଘୋର ଦୁଃଖ ଆଗୋ ପ୍ରିୟ ପଲ୍ଲୀ, ତୋ ପଲ୍ଲବମୟ ଅଙ୍କ ଛାୟାତଳେ ଆଶ୍ରିବାକୁ ମୁହିଁ ସଦାରଙ୍କ"– ପଲ୍ଲୀର ଏଇ ଶାନ୍ତିମୟ ଛାୟାତଳେ ଜୀବନ ମୋର ସୁଖରେ ଚାଲିଯିବ—

(ସୂର୍ଯ୍ୟମଣିଙ୍କ ସହିତ ଗୋପାଲ ପ୍ରହରାଜ ପଶି ଆସିଲେ)

ସୂର୍ଯ୍ୟ – ଆସନ୍ତୁ ଗୋପାଲ ବାବୁ !

ଗୋପାଳ – କାହାନ୍ତି, କାହାନ୍ତି ନନ୍ଦକିଶୋରବାବୁ ?

(କୋକିଳ ତାଙ୍କୁ ଦେଖି ଆଡ଼ ହୋଇ ବସିଲେ)

ନନ୍ଦ – (ଉଠିବାକୁ ଚେଷ୍ଟାକରି) କିଏ ଗୋପାଳ ବାବୁ ! (ଆନନ୍ଦରେ) ଆଃ, ଆଜି ମୋର କି ସୌଭାଗ୍ୟ ? ଶେଷ ଜୀବନରେ ମୁଁ ଆପଣଙ୍କ ଦେଖା ପାଇବି ତା' ଭାବି ନଥିଲି ଗୋପାଳ ବାବୁ !

ଗୋପାଳ – ଆ -ହା, ଆପଣ ଉଠୁଛନ୍ତି କାହିଁକି ? (ଧରି ଶୁଆଇ ଦେଲେ) ଏତେ କଷ୍ଟ ପାଇଲେଣି....ଟିକିଏ ବି ଖବର ଆମକୁ ଦେଲେ ନାହିଁ···(ଦୁଃଖରେ) ସହପାଠୀ ଜୀବନର ସବୁ କଥା ମୋର ଆଜି ମନେ ପଡ଼ୁଛି ନନ୍ଦକିଶୋର ବାବୁ ! ଆପଣ ଖବର ନ ଦେଲେ ବି ସେଦିନର ମାୟା ମୋତେ ଏତେ ଦୂର ଟାଣି ଆଣିପାରିଛି···ଗୁରୁ ମିତଙ୍କର ସେଦିନର ସେଇ ସୁଖ ସ୍ମୃତି ଆଜି ଅସ୍ତ ହୋଇଯାଇଛି କାମପାଳ ବାବୁଙ୍କ ଜୀବନ ଫୁଲ ଅଜଣା କେଉଁଠି ଝରି ପଡ଼ିଲା । ଅଭିରାମ ବାବୁ·କଡ଼ିଟି ବେଲ୍ଟୁ କୀଟଦଷ୍ଟ ହେଲେ । ଆପଣ ବି ଚାଲିଯିବେ···ଶେଷକୁ ·ରହିଲି ମୁଁ···ଅଭାଗା···ଅଭାଗା ମୁଁ ଶେଷ ଜୀବନରେ କାହାରି ମୁହଁ ନ ଦେଖି ମରିବା ମୋ ଭାଗ୍ୟରେ ଅଛି....(କାନ୍ଦିଲେ)

ନନ୍ଦ—(ଦୁଃଖରେ) ଆଃ, ଆପଣ ବି ଶେଷରେ କାନ୍ଦିବାକୁ ଆସିଲେ ଗୋପାଳ ବାବୁ ! ଘରେ, ବାହାରେ ସବୁଆଡ଼େ ଖାଲି କ୍ରନ୍ଦନର ଧ୍ୱନି··ମୁଁ ବୁଝିପାରୁନି ଆପଣମାନେ କାହିଁକି ଏମିତି କାନ୍ଦୁଛନ୍ତି । ଫକୀରମୋହନ ବାବୁ, ମଧୁ ବାବୁଙ୍କର ଅମର ଆତ୍ମା ମୋତେ ହାତଠାରି ଡ଼ାକୁଛନ୍ତି··· ମୋତେ ଯିବାକୁ ପଡ଼ିବ....ଆଉ ସେଇ ଯାତ୍ରା ହେବ ଶାନ୍ତିର ··ଆନନ୍ଦର··· ଦିଅନ୍ତୁ ଗୋପାଳ ବାବୁ ! ଆପଣ ସେଇ ହାତଟା ମୋତେ ଧରିବାକୁ ଦିଅନ୍ତୁ—ଯେଉଁ ହାତରେ ଆପଣ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ପରି ଅମୂଲ୍ୟ ରତ୍ନ ଓଡ଼ିଆ ସାହିତ୍ୟ ପାଇଁ ଗଢ଼ିଛନ୍ତି, ଯେଉଁ ହାତରେ ମୋତେ ବନ୍ଧୁ ଭାବରେ ଆଲିଙ୍ଗନ କରିଛନ୍ତି ସେଇ ହାତକୁ ଆଜି ଛାତି ଉପରେ ରଖି ମୁଁ ପରପାରିର ସ୍ୱପ୍ନ ଦେଖିବି । ····(ଗୋପାଳ ପ୍ରହରାଜ ଡାହାଣ ହାତଟି ବଢ଼ାଇ ଦେଲେ । ନନ୍ଦକିଶୋର ସେଇ ହାତକୁ ଦୁଇ ହାତରେ ଚାପି ଧରିଲେ ଛାତି ଉପରେ) ଆଃ, କି ଶାନ୍ତି ··(ସମସ୍ତେ କାନ୍ଦୁଥା'ନ୍ତି··· ରଙ୍ଗମଞ୍ଚରେ କାରୁଣ୍ୟର ସାମ୍ରାଜ୍ୟ·····ଅର୍କେଷ୍ଟ୍ରାର ମୃଦୁ କରୁଣ ଗୁଞ୍ଜନ ଗୁମୁରି ଗୁମୁରି କାନ୍ଦୁଥିଲା । ସୂର୍ଯ୍ୟମଣି କୋଧ ସମ୍ବରଣ କରି କହିଲେ)

ସୂର୍ଯ୍ୟ—ଗାଡ଼ି ଆସି ବାହାରେ ଠିଆ ହେଲଣି । ଆପଣ କଟକ ଯିବେ ନନ୍ଦକିଶୋର ବାବୁ !···

ନନ୍ଦ—(ହଠାତ୍ ଯେପରି ଡରିଗଲେ। ନା-ନା ସୂର୍ଯ୍ୟମଣି, ତୁମେମାନେ କାହିଁକି ଆଉ ସେ ଚେଷ୍ଟା କରୁଛ ? ମୋର ଏଇ ପ୍ରିୟ ପଲ୍ଲୀରେ ମୋତେ ବସନ୍ତର ମଳୟ ଛୁଇଁ କୋକିଳର କାକଳୀ ଶୁଣି ମରିବାକୁ ଦିଅ···

କୋକିଳ—(ଦୁଃଖରେ) ତୁମେ ଆଉ ମନା କରୁଛ କାହିଁକି ? ଦେହକୁ ଥରେ ଦେଖନ୍ତୁ ନା। ଭଲହେଇ ଆସିଲେ ସବୁଦିନେ ତ ଏଇ ଗାଁରେ ରହିବ····

ଗୋପାଳ ଆପଣ କଥା ମାନନ୍ତୁ ନନ୍ଦକିଶୋରବାବୁ ! ପ୍ରିୟଜନଙ୍କ ମନରେ ଦୁଃଖ ଆଣି ଆପଣ କ'ଣ ଶାନ୍ତି ପାଉଛନ୍ତି ?

ନନ୍ଦ—ଓଃ, ଶେଷରେ ଆପଣ ବି ସେଇ କଥା କହିଲେ ଗୋପାଳବାବୁ ! ଆବାଲ୍ୟ ବନ୍ଧୁ ହେଇ ବି ମୋର ମନକଥା ବୁଝିପାରିଲେ ନାହିଁ ? ନଗରର କୋଳାହଳ, ହିଂସା, ଦ୍ୱେଷଭରା ବାତାବରଣ ଭିତରେ ମରିବାକୁ ନ ଦେଇ ପଲ୍ଲୀର ଏଇ ଶାନ୍ତିମୟ କୋଳରେ ମୋତେ ମରିବାକୁ ଦିଅନ୍ତୁ ଆପଣ—Let me die peacefully in my native village ·······

(ବାହାରେ ମୋଟର ରହିବାର ଶବ୍ଦ । ଅସ୍ତବ୍ୟସ୍ତ ହେଇ ପଶି ଆସିଲେ ବିମ୍ବାଧର)

ବିମ୍ବା—ନା-ନା, ଆପଣଙ୍କୁ ଆଜି ଆମର ଅନୁରୋଧ ରକ୍ଷା କରିବାକୁ ହେବ ନନ୍ଦକିଶୋରବାବୁ···

ନନ୍ଦ—(ହସି) କିଏ ବିମ୍ବାଧର ? କଙ୍କାଳକୁ ନେଇ ମୋତେ ପୁଣି ଭଲ କରିବାର ସ୍ୱପ୍ନ ଏବେ ବି ଦେଖୁଛ ? ତୁମର ପଲ୍ଲୀକବିକୁ ନୂତନ ପ୍ରାଣଦେଇ ପଲ୍ଲୀକୁ ଫେରେଇ ଆଣିବାର କଳ୍ପନା ତୁମେ ଏବେ ବି କରୁଛ ? ପାଗଳ.... ପାଗଳ····ତୁମେ ସଂସାରର ମାୟା ମମତାରେ ଛନ୍ଦିହେଇ ତୁମେ ଶିଳ୍ପୀର ଦୂରଦୃଷ୍ଟି ହରେଇ ବସିଛ ବିମ୍ବାଧର ! ଏ ଯାତ୍ରା ମୋର ମହାଯାତ୍ରା···ଓଡ଼ିଶାର ପଲ୍ଲୀକବି ଆଉ ତା'ର ପ୍ରିୟ ପଲ୍ଲୀକୁ ଫେରି ଆସିବ ନାହିଁ···

ଶେଷ ଯବନିକା